ବୋଇଲୁ ହୋଇ ଛନ ଛନ,
କେ ମୋତେ ଡାକଇ ଏସନ,
କେ ଢାଳଲା ଶ୍ରବଣେ ଅମୃତ ନମନ୍ତ୍ରେ,
କଲ ମୋ ମନ ଉଚ୍ଚାଟନ ।

୪

ମେଘ ମନ୍ଦ୍ର ଆବର ଧ୍ୱନଲା ଆକାଶର
ତୋ ପ୍ରାଣ-ଆବେଗ ବଢାଇ ।
ତା ସଙ୍ଗେ ବର୍ଷାବାର ସୁମଧୁରେ ଝଙ୍କାର
ପଡ଼ିଲା ତୋ ବକ୍ଷରେ ଯାଇ
ତୋ ହୃଦ ନୋହିଲା ସମ୍ଭାଳ,
ବୋଇଲୁ ହୃଦ ଦେବ ଢାଳ,
ବାରବ କଏ ମୋତେ ? ଯିବ ମୁଁ ବହ ସ୍ରୋତେ
ମୋ ଦନ ଗଲା ଭଳ ଭଳ ।

୫

ସଙ୍କଳ୍ପ ଅନୁସର ତେଜଲୁ ଗିରଦର୍ଗ
ଉତ୍ଫୁଲ ପଡ଼ିଲୁ ବାହାରେ ।
ବର୍ଣ୍ଣାଳ ଶିଳାରାଶି ଭେଟିଲୁ ଛ୍ୱାଟେ ଆସି
ରୁନ୍ଧ ତୋ ପଥ ସେ ବାଧାରେ ।
ତହୁଁ ତୁ ଗଗନେ ଅନାଇ,
ହୃଦସ୍ୱେ କ ଅଭୟ ପାଇ,
ଗର୍ଜି ଅତ ପ୍ରଚଣ୍ଡେ ତାଡଣ ଶିଳାଖଣ୍ଡେ
ତା ପ[illegible]ଲୁ ତୁ ମୋଡାଇ ।

ହୃଦସ୍ୱ-ଅନୁରା[illegible] ଧା[illegible] ଯେତେ ଆଗେ
ଆପଣା[illegible] ଆପେ

ବିଘ୍ନ ବ୍ୟାଘାତରାଶି          ସ୍ରୋତେ ଯାଆନ୍ତେ ଭାସି
ଆନନ୍ଦ ତୋର ଗଲା ବଢ଼ି ।
ଆନନ୍ଦେ ବିମଳ ତରଳ
ତୋ ମୂର୍ତ୍ତି ଦିଶିଲା ଉଜ୍ଜ୍ୱଳ ।
କଳକଳ ନାଦରେ          ତୋ କଣ୍ଠୁଁ ହର୍ଷଭରେ
ସ୍ଫୁରିଲା ଗୀତ ଅନର୍ଗଳ ।

୭

ଗିରି ଭୂମି ବିରଞ୍ଚି          ମହାନନ୍ଦେ ଗରଜି
ତୁ ଅବତରିଲୁ ଭୂତଳେ ।
ତୋତେ ଦେଖିବା ପାଇଁ          ଦଶ ଦିଗରୁ ଧାଇଁ
ଆନନ୍ଦେ ଆସିଲେ ସକଳେ ।
ଫେନିଳ କଲ୍ଲୋଳ ତୋହର,
ଚଞ୍ଚଳ କଳକଳ ସ୍ୱର,
ବିମଳ ଜଳରାଶି          ଆନନ୍ଦେ ପରକାଶି
ମୋହିଲୁ ସକଳ ଅନ୍ତର ।

୮

ତହୁଁ ମଙ୍ଗଳଧ୍ୱନି          ଅନ୍ତରୀକ୍ଷ ଅବନୀ
ବ୍ୟାପିଲା କୋଟି କଣ୍ଠୁଁ ସ୍ଫୁରି ।
ଶୁଣି ସେ ଶୁଭ ଗୀତ          ଶୁଭ୍ର ଅମୃତ ପ୍ରୀତି-
ରସେ ତୋ ହୃଦ ଗଲା ପୂରି ।
ପ୍ରବାହ ହେଲା ବିସ୍ତାରିତ ।
ସୁତଟଯୁଗେ ବିମଣ୍ଡିତ ।
କେତେ ଗିରିକୁମାରୀ          ତଟିନୀ ସୁକୁମାରୀ
ମିଳିଲେ ଆସି ତୋ ସହିତ ।

୯

ଆଲିଙ୍ଗିଲୁ ଆଦରେ ଧର ସଖୀଙ୍କ କରେ
ହୋଇଲୁ ମିଶି ଏକାକାର ।
ଭଉଁରଖେଳେ ମାତି ଚାଲିଲୁ ଦବାଗତି
ବସ୍ତାର ପ୍ରବାହ ଉଦାର ।
ଦେଖିଲୁ ଦୂର ପାରୁଶରେ
ଲାଗିଛି ଲୀଳା କରନ୍ତରେ
ବହୁ ଗ୍ରାମ ନଗର ଜନ କ୍ଷେତ୍ର ପ୍ରାନ୍ତର
ଦେଖିଲୁ ତୋ ଗୃରୁ କୂଳରେ ।

୧୦

ଯାଉଁ ଯାଉଁ ପଥରେ ମୀନ ନକ୍ର ମକରେ
ମାଗିଲେ ଶରଣ ତୋହର ।
ବସ୍ତାରଣ କଲ୍ଲୋଳ ଆଦରେ ଦେଲୁ କୋଳ
ସକଳଜୀବ-ସୁଖକର ।
ବକ୍ଷରେ ବହିଲୁ ତରଣୀ,
ମଣ୍ଡିଲୁ ଯତନେ ଧରଣୀ
ଶ୍ୟାମଳ ଦୁର୍ବାଦଳେ, ପତ୍ର କୁସୁମ ଫଳେ,
ଯେଣୁ ତୋ ଜଳ ସ୍ୱର୍ଣ୍ଣମଣି ।

୧୧

କାହିଁ ଦେବମନ୍ଦିରେ ଭକ୍ତଗଣ ଗମ୍ଭୀରେ
ପଢ଼ନ୍ତି ସ୍ତବ ଶୁଦ୍ଧମନେ ।
କାହିଁ ଲୋକ ଗହଳ ବକା କଣା ଚହଳ
କାହିଁ ଚଷନ୍ତି ଗୃଷୀ ଜନେ ।
କାହିଁ ବା ଗୃହେ ଗୃହାଳୀରେ,
ପଢ଼ନ୍ତି ପୋଥି ଧୀରେ ଧୀରେ ।

କାହିଁ ବସିଛୁ ହାଟ          କାହିଁ ରାଜର ଘାଟ
ରଚିତ ସୋପାନ ଶ୍ରେଣୀରେ ।

୧୨

କାହିଁ ନଉଡ଼ି ଧର          ଚରାଏ ଗୋ ବାଳୁର
ଗଉଡ଼ ମୁରଲୀ ବଜାଇ ।
କାହିଁ ଧାନ ଅମଲ          କରଇ କୃଷୀବଳ
ଖଳାରେ ବେଙ୍ଗଳା ପକାଇ ।
କାହିଁ ବା ଘନକାନନରେ
ଭୀଷଣ ଶାର୍ଦ୍ଦୂଳ ବିଚରେ ।
କାହିଁ ଭୀମ ଶ୍ମଶାନେ          ଗୃଧ୍ର ଶୃଗାଳ ଶ୍ୱାନେ
ଝୁଲନ୍ତି ବିକଟ ନାଦରେ ।

୧୩

ଏମନ୍ତେ ବହୁ ଦେଶେ          ବୁଲି ତୁ ଅବଶେଷେ
ମାର୍ଗରେ ଭେଟିଲୁ ଜୁଆର ।
ବିପୁଳ ପୁଲକରେ          ପୂରଯାଇ ଅନ୍ତରେ
ଦଶିଲୁ ଆହା କି ଉଦାର ।
ଜୁଆର କ୍ରମେ ବାହୁଡ଼ିଲା
ତୋ ତନୁ କୃଶତା ଭଜିଲା ।
ପୁଣି ଜୁଆର ଛଟା          ଭାଗ୍ୟର ହଟହଟା
ଜୀବନେ ତୋହର ଘଟିଲା ।

୧୪

କାନ୍ଥୁ ତୁ ଗଲୁ ଚଳି          ଦୁର୍ଦ୍ଦଶା ଦାଉ ବଳି
କି ମହାଧୃତି ହୃଦେ ଧର ।
ବିଧାତାର କୃପାରେ          ସୁବିପୁଳ ବନ୍ୟାରେ
ପୂରିଲା ପରାଣ ତୋହର ।

ପଶିଲି ଏବେ ତୋ ଶ୍ରବଣେ
ସାଗର ଘୋଷ ଶୁଭ୍ରକ୍ଷଣେ ।
ଉଲ୍ଲାସେ ଉନ୍ମାଦନୀ ହେଲୁ ଗୁହ ତଟିନୀ
ଧାଇଁଲୁ ସାଗର-ସଦନେ ।

୧୫

ଗର୍ଜ୍ଜି ଗର୍ଜ୍ଜି ସୁନୀଳ ସମୁଦ୍ରେ ତୋ ସଲିଳ
ଦେଲୁ ଭୁଞ୍ଜାଇ ମହାପୂରେ ।
ଅନନ୍ତ ସିନ୍ଧୁ ସଙ୍ଗେ ମିଶିଗଲୁ କି ରଙ୍ଗେ
ସକଳ ଭେଦ ଫିଙ୍ଗି ଦୂରେ ।
ଲହରୀ-ହୀରକର ହାର,
ତୋ କଣ୍ଠେ ଦେଲୁଁ ପାରାବାର
ଲମ୍ଭାଇ ମହାନନ୍ଦେ ଗାଏ ଗାୟତ୍ରୀ ଛନ୍ଦେ
ତୋ ସଙ୍ଗେ ସଙ୍ଗୀତ ଉଦାର ।

ପ୍ରଶ୍ନ

୧ । 'ନଦୀ' ଏହି କବିତାଟି ଯେଉଁ ଛନ୍ଦରେ ଲିଖିତ ତାହାର ଲକ୍ଷଣ ବୋଲ ।

୨ । ନୀରେ‌ଲେ, ଲୋକଲୋଚନ-ଅଗୋଚରେ, ଗାୟତ୍ରୀ ଛନ୍ଦେ, ଭାଗ୍ୟର ହଟହଟା, ତୋ ଜଳ ସ୍ୱର୍ଣ୍ଣମଣି, ଭଉଁରୀଖେଳ, ଲହରୀହୀରକର ହାର, ଏଗୁଡ଼ିକର ଅର୍ଥ ବୁଝାଇଦିଅ ।

୩ । ଉତ୍ପତ୍ତିସ୍ଥାନରୁ ସାଗରସଙ୍ଗମ ପର୍ଯ୍ୟନ୍ତ ନଦୀର ଯେଉଁ ଯେଉଁ ବିଭିନ୍ନ ଅବସ୍ଥା ଦେଖାଯାଏ ତାହା ବର୍ଣ୍ଣନ କର ।

୪ । ମନୁଷ୍ୟର ଜୀବନସଙ୍ଗରେ ନଦୀର ସାଦୃଶ୍ୟ ବିସ୍ତାରିତରୂପେ ବର୍ଣ୍ଣନା କର ।

୫ । ଜଣେ ଜଣେ ଏହି କବିତାର ଗୋଟିଏ ଗୋଟିଏ ଶ୍ଳୋକ ଆବୃତ୍ତି କର ଏବଂ ତାହାକୁ ବୃତ୍ତ ଅନୁସାରେ ବୋଲ ।

୬। ତୃତୀୟ ଶ୍ଳୋକରେ ଛନଛନ ଓ ନମନ୍ତଣେ ; ଚତୁର୍ଥ ଶ୍ଳୋକରେ ଆକାଶର, ବାରବ ଓ ଭଳଭଳ ; ଷଷ୍ଠ ଶ୍ଳୋକରେ ଗୃଣ୍ଡେ ଓ ଯାଆନ୍ତେ ; ସପ୍ତମ ଶ୍ଳୋକରେ ମୋହିଲୁ ; ତ୍ରୟୋଦଶ ଶ୍ଳୋକରେ ଘଟିଲ ଏବଂ ପଞ୍ଚଦଶ ଶ୍ଳୋକରେ ଗୃହୁଁ ଗୃହୁଁ ଏହି ପଦଗୁଡ଼ିକର ଅନ୍ୱୟ କର ।

୭। ବକାଙ୍କଣୀତହିଲ, ପଙ୍କଜକୁସୁମଫଳେ, ବଦ୍ଧବ୍ୟାଘାତଶୀ, ଲୋକ-ଲୋଚନ-ଅଗୋଚରେ, ବ୍ୟୋମବିହାରୀ, ଏ ପଦମାନଙ୍କର ସମାସ ବ୍ୟାଖ୍ୟା କର ।

୮। ନଦୀର ଉତ୍ପତ୍ତି ଓ ପ୍ରବାହ, ଭୂମିଉପରେ ତାହାର କାର୍ଯ୍ୟ ଏବଂ ମନୁଷ୍ୟଦ୍ୱାରା ତାହାର ଜଳର ବ୍ୟବହାର ବିଷୟରେ ଗୋଟିଏ ପ୍ରବନ୍ଧ ଲେଖ ।

୯। ଗଡ଼ି, ବଡ଼ି, ଗୃଠ, ହାଠ, ନଉଡ଼ି, ବାଛୁର, ଗୃହାଳୀ, ବାହୁଡ଼ିଲା, ଏ ଶବ୍ଦଗୁଡ଼ିକ କେଉଁ କେଉଁ ଶବ୍ଦର ଅପଭ୍ରଂଶ ?

## ବୁଦ୍ଧଦେବ *

ଯେଉଁ ମହାପୁରୁଷଙ୍କ ପ୍ରବର୍ତ୍ତିତ ଧର୍ମ ସମ୍ପ୍ରତି ଆସିଆଖଣ୍ଡର ଅଧିକାଂଶ ଅଧିବାସୀଙ୍କର ଅବଲମ୍ବିତ, ସେହି ଭୁବନବିଖ୍ୟାତ ମହାତ୍ମା ବୁଦ୍ଧଦେବ ନେପାଳ ରାଜ୍ୟର ହିମାଚ୍ଛନ୍ନପର୍ବତମାଳାର ସମୀପବର୍ତ୍ତୀ କପିଳବାସ୍ତୁନାମ୍ନୀ ନଗରୀରେ ଜନ୍ମ-ଗ୍ରହଣ କରିଥିଲେ । ତାଙ୍କର ପିତା ଶୁଦ୍ଧୋଦନ କପିଳବାସ୍ତୁର ଅଧିପତି ଥିଲେ । ତାଙ୍କର ଜନନୀ ମାୟାଦେବୀ ସୁପ୍ରବୁଦ୍ଧନାମକ ରାଜାର ତନୟା ଥିଲେ । ବୁଦ୍ଧ-ଦେବ କ୍ଷତ୍ରିୟ ଶାକ୍ୟବଂଶରୁ ସମ୍ଭୂତ ହୋଇଥିଲେ ; ପୈତୃକନାମାନୁସାରେ ସେ ଶାକ୍ୟନାମରେ ଅଭିହିତ ହେଲେ । ବୁଦ୍ଧ ବାଲ୍ୟକାଳରେ ସିଦ୍ଧାର୍ଥନାମରେ

* Max Muller's "Chips from a German Workshop."



ବୁଦ୍ଧଦେବ

ଅଖ୍ୟାତ ହୋଇଥିଲେ । ଯୌବନ ସମୟରେ ସେ ଆପଣାକୁ ବୁଦ୍ଧନାମରେ ପରିଚିତ କରାଇଥିଲେ । ଗୌତମକୁଳ ସଙ୍ଗରେ ତାଙ୍କର ସମ୍ବନ୍ଧ ଥିବାରୁ ତାଙ୍କର ଅନ୍ୟତମ ନାମ ଗୌତମ ହୋଇଥିଲା ।

ବୁଦ୍ଧଦେବଙ୍କର ଜନ୍ମଗ୍ରହଣର ସପ୍ତମ ଦିବସରେ ତାଙ୍କର ଧର୍ମଶୀଳା ଜନନୀ ମାନବଲୀଳା ସମ୍ବରଣ କଲେ । ତାଙ୍କ ପିତା ନବପ୍ରସୂତ ପୁତ୍ରକୁ ମୃତ ପତ୍ନୀଙ୍କ ଭଗିନୀର ହସ୍ତରେ ସମର୍ପଣ କଲେ । ବୁଦ୍ଧଦେବ ଅତି ଶୈଶବକାଳରେ ଚିନ୍ତା-ଶୀଳତା ନିମିତ୍ତ ଖ୍ୟାତି ଲଭିଥିଲେ । ସେ ଅତି ଅଳ୍ପ ବୟସରେ ନିଜ ଅସାଧାରଣ ବୁଦ୍ଧି ପ୍ରଭାବରେ ଅନେକ ଶାସ୍ତ୍ର ଅଧ୍ୟୟନ କଲେ । ବୁଦ୍ଧଦେବ ସହଚର-ମାନଙ୍କ ସଙ୍ଗରେ କ୍ରୀଡ଼ାକୌତୁକରେ ଲିପ୍ତ ନ ଥାଇ ନିର୍ଜ୍ଜନ ପ୍ରଦେଶରେ ଉପ-ବିଷ୍ଟ ହୋଇ ଚିନ୍ତାସାଗରରେ ନିମଗ୍ନ ରହୁଥିଲେ । ରାଜା ପୁତ୍ରର ଏପରି ପ୍ରବୃତ୍ତି ସନ୍ଦର୍ଶନ କରି କାଳେ ପୁତ୍ର ସଂସାରବିରାଗୀ ହୋଇଯିବ, ଏହି ଆଶଙ୍କାରେ ତାଙ୍କୁ ପରିଣୟସୂତ୍ରରେ ବଦ୍ଧ କରିବା ପାଇଁ କୃତସଙ୍କଳ୍ପ ହେଲେ । ରାଜାଙ୍କର ପ୍ରଧାନ ସଚିବ ସିଦ୍ଧାର୍ଥଙ୍କ ଆଗରେ ବିବାହ ବିଷୟ ପ୍ରସ୍ତାବ କଲାରୁ ସେ ଉକ୍ତ ବିଷୟ ଆଲୋଚନା କରିବା ନିମନ୍ତେ ସାତଦିନର ଅବସର ଗ୍ରହଣ କଲେ । ଅବଶେଷରେ ବିବାହ ଦ୍ୱାରା ତାହାଙ୍କର ଚିତ୍ତଶାନ୍ତି ଭଗ୍ନ ହୋଇପାରିବ ନାହିଁ ଜାଣି ସେ ବିବାହ ବିଷୟରେ ସମ୍ମତି ପ୍ରଦାନ କଲେ । ଦଣ୍ଡପାଣି ନାମଧେୟ ରାଜାଙ୍କର ଗୋପାନାମ୍ନୀ ଗୋଟିଏ ପରମରୂପବତୀ କନ୍ୟା ଥିଲା । ତାହାଙ୍କର ଅନ୍ୟତର ନାମ ଯଶୋଧାରା । ଏହି କନ୍ୟାସଙ୍ଗରେ ବିବାହ ହେବାର ନିଶ୍ଚୟ ହେଲା । ପ୍ରଥମରେ ଦଣ୍ଡପାଣି ସିଦ୍ଧାର୍ଥଙ୍କୁ ମନୁଷ୍ୟତ୍ୱବିହୀନ ଏବଂ ବୁଦ୍ଧିଶୂନ୍ୟ ମଣି ତାଙ୍କ ହସ୍ତରେ ନିଜ ଦୁହିତାକୁ ସମ୍ପ୍ରଦାନ କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ; କିନ୍ତୁ ପରେ ତାଙ୍କ ଅସାଧାରଣ ଧୀଶକ୍ତି ଏବଂ ଶୌର୍ଯ୍ୟର ପରିଚୟ ପାଇ ପରମ ଆନନ୍ଦରେ ତାଙ୍କ ସଙ୍ଗରେ ନିଜ କନ୍ୟାକୁ ବିବାହିତା କରାଇଲେ ।

ଶାକ୍ୟସିଂହଙ୍କର ପରିଣୟ ସମ୍ପନ୍ନ ହେଲା ସତ୍ୟ, କିନ୍ତୁ ସେ ପୂର୍ବବତ୍ ଜୀବନ ଓ ମୃତ୍ୟୁ-ବିଷୟକ ଗଭୀର ଚିନ୍ତାରେ ନିମଗ୍ନ ଥାଇ କାଳାତିପାତ କରି-ବାକୁ ଲାଗିଲେ । କୌଣସି କୌଣସି ସମୟରେ ସେ ନିମ୍ନଲିଖିତ ପ୍ରକାରରେ କଥୋପକଥନ କରୁଥିଲେ । "ଏହି ପାପମୟ ସଂସାରରେ ସମୁଦାୟ ଅନିତ୍ୟ ଏବଂ ଅସତ୍ୟ । କିଛିହିଁ ସ୍ଥିର ନୁହେଁ । ଦୁଇଖଣ୍ଡ କାଷ୍ଠର ଘର୍ଷଣଦ୍ୱାରା ଉତ୍ପନ୍ନ ଅଗ୍ନି-କଣାତୁଲ୍ୟ ଏହି ଜୀବନ ପ୍ରଜ୍ୱଳିତ ହୋଇ ମୁହୂର୍ତ୍ତକ ଉତ୍ତାରେ ନିର୍ବାଣପ୍ରାପ୍ତ ହୁଏ ।

ଏହି ଜୀବନ ବୀଣାଶବ୍ଦର ତୁଲ୍ୟ, ଏହାର ଆଗମନ ଓ ପ୍ରତିଗମନର ସ୍ଥାନ ନିରୂପଣ କରିବା ଅସମ୍ଭବ ଅଟେ । ଅବଶ୍ୟ ଶାନ୍ତିର ଆଧାର ଓ ମୁକ୍ତିର ଉତ୍ସ-ସ୍ୱରୂପ ପରମାତ୍ମା ବିଦ୍ୟମାନ ଅଛନ୍ତି । ମୁଁ ସେହି ଶାନ୍ତି ଓ ମୁକ୍ତି ଲଭିପାରିଲେ ଭ୍ରାନ୍ତ ମନୁଷ୍ୟଙ୍କୁ ସତ୍ୟର ପଥ ଦେଖାଇପାରିବି ।” ରାଜା ପୁତ୍ରର ଏପରି ବୈରାଗ୍ୟ ଦର୍ଶନ କରି ପୁତ୍ରକୁ ବିଷୟସୁଖରେ ପ୍ରବୃତ୍ତ କରାଇବା ନିମନ୍ତେ ବିବିଧ ଚେଷ୍ଟା କଲେ, କିନ୍ତୁ ତାଙ୍କର ସମସ୍ତ ଯତ୍ନ ବିଫଳ ହେଲା । ତିନୋଟି ସାମାନ୍ୟ ଘଟନାଦ୍ୱାରା ବୁଦ୍ଧଦେବଙ୍କ ଜୀବନର ଗତି ଅତି ଅଦ୍ଭୁତରୂପେ ପରିବର୍ତ୍ତିତ ହୋଇଥିଲା । ସେହି ଘଟନାତ୍ରୟର ଉପାଖ୍ୟାନ ନିମ୍ନରେ ବିବୃତ ହେଉଅଛି ।

ଦିନେ ସିଦ୍ଧାର୍ଥ ବନ୍ଧୁ ଅନୁଚରସଙ୍ଗରେ ସାୟଂସମୀରଣ ସେବନ କରିବା ନିମନ୍ତେ ନଗରର ପୂର୍ବଦ୍ୱାର ଦେଇ ନିଜ ଉଦ୍ୟାନଆଡ଼କୁ ଯାଉଥିଲେ, ମାର୍ଗରେ ଗୋଟିଏ ରୁଗ୍ଣ, ଜରାକ୍ଳିଷ୍ଟ, ଶ୍ଳଥଚର୍ମୀ ବ୍ୟକ୍ତି ତାଙ୍କର ଦୃଷ୍ଟିଗୋଚର ହେଲା । ତାହାର ଶରୀରସ୍ଥ ଶିରା ଓ ମାଂସପେଶୀ ସମୁଦାୟ ବାହାରକୁ ଦିଶୁଥିଲା । ତାହାର ଦନ୍ତଶ୍ରେଣୀ ଶୀତରେ କମ୍ପୁଥିଲା, ଦେହରେ ଖଣ୍ଡିଏ ଜୀର୍ଣ୍ଣ ଓ ଛିନ୍ନ ବସ୍ତ୍ର ଛଡ଼ା ଆଉ କିଛି ନ ଥିଲା । ଅନାହାର ହେତୁରୁ ମୁଖରୁ ବାକ୍ୟ ସ୍ଫୁରୁ ନ ଥିଲା, ଖଣ୍ଡିଏ ଯଷ୍ଟିଉପରେ ଭର ଦେଇ ଏକ ଏକ ପଦ ଅଗ୍ରସର ହେଉଥିଲା । ପୁଣି ଦୁର୍ବଳତା ହେତୁରୁ ଭୂମିଶାୟୀ ହେଉଥିଲା । ସିଦ୍ଧାର୍ଥ ସାରଥିଙ୍କୁ ପଚାରିଲେ “ଏ ମନୁଷ୍ୟଟି କିଏ ? ଦେଖ, ଏହାର ଶରୀର ରୁଗ୍ଣ ହୋଇଅଛି, ରକ୍ତ ମାଂସ ଶୁଷ୍କ ହୋଇଅଛି, ଅସ୍ଥି ଓ ଶିରା ସମୁଦାୟ ଚର୍ମମଧ୍ୟରୁ ଦେଖାଯାଉଅଛି ଏବଂ ମସ୍ତକର କେଶସମୂହ ଧଳା ହୋଇଅଛି । ଚଳିଲାବେଳକୁ ଏହାର ପାଦ ସ୍ଖଳିତ ହେଉଅଛି । ଏହି ଶୋଚନୀୟ ଅବସ୍ଥା ଏହାର ଦରିଦ୍ରତା ହେତୁରୁ ହୋଇଅଛି, ନା ସମସ୍ତ ମନୁଷ୍ୟଙ୍କୁ ଏହି ଅବସ୍ଥାରେ ପଡ଼ିବାକୁ ହୁଏ ?” ସାରଥି ଉତ୍ତର କଲା “ମହାଭାଗ ! ଏ ବ୍ୟକ୍ତି ଜୀବନର ଶେଷଦଶାରେ ଉପସ୍ଥିତ ହୋଇଅଛି, ଏହାର ବୁଦ୍ଧିବୃତ୍ତିସମୁଦାୟ ନିସ୍ତେଜ ହୋଇଅଛି, ଏ ବ୍ୟକ୍ତି ଉତ୍ଥାନଶକ୍ତିରହିତ ହୋଇଅଛି, ଏହାର ବନ୍ଧୁ ଓ ପରିବାରବର୍ଗ ଏହାକୁ ବନ-ମଧ୍ୟସ୍ଥ ଶୁଷ୍କବୃକ୍ଷତୁଲ୍ୟ ପରିତ୍ୟାଗ କରିଅଛନ୍ତି । ଏ ବ୍ୟକ୍ତିର ଦରିଦ୍ରତାରୁ

ଏପରି ଘଟି ନାହିଁ । ମନୁଷ୍ୟର ଯୌବନକାଳ ପ୍ରସ୍ଫୁଟିତ ପୁଷ୍ପର ସୌରଭ ତୁଲ୍ୟ କ୍ଷଣସ୍ଥାୟୀ ଏବଂ ବୃଦ୍ଧାବସ୍ଥା ଉପସ୍ଥିତ ହେଲେ ଯୌବନଶ୍ରୀ ବିନଷ୍ଟ ହୁଏ । ଆପଣଙ୍କ ପିତା ମାତା ବନ୍ଧୁ କୁଟୁମ୍ବ ସମସ୍ତେ ଏହି ଦଶାର ଅଧୀନ ।" ରାଜପୁତ୍ର ଉତ୍ତର କଲେ "ଆହା, ମନୁଷ୍ୟମାନେ କି ଏଡ଼େ ହୀନବୁଦ୍ଧି ଯେ ବୃଦ୍ଧାବସ୍ଥାର କଷ୍ଟସମୂହ ସମ୍ମୁଖରେ ଦେଖି ସୁଦ୍ଧା ଯୌବନର ଅସ୍ଥାୟୀସୌନ୍ଦର୍ଯ୍ୟରେ ବିମୋହିତ ହୁଅନ୍ତି ! ମୁଁ ମଧ୍ୟ ଏହି ଜରାର ଅଧୀନ, ମୁଁ ମଧ୍ୟ ଏହି ବ୍ୟକ୍ତିପରି ଶ୍ଳଥଚର୍ମୀ ଓ ହୀନବଳ ହେବି, ତେବେ ଅନିତ୍ୟ ବିଷୟସୁଖରେ ଲିପ୍ତ ହେଲେ କି ହେବ ?" ଏହା କହି ରାଜପୁତ୍ର ସାରଥିକୁ ରଥ ଫେରାଇବାକୁ ଆଦେଶ ଦେଲେ ।

କିଛିଦିନ ଉତ୍ତାରେ ବୁଦ୍ଧଦେବ ଆଉ ଦିନେ ପ୍ରାତଃସମୀରଣ ସେବନ କରିବା ନିମନ୍ତେ ନଗରର ଦକ୍ଷିଣଦ୍ୱାର ଦେଇ ନିଜ ଉଦ୍ୟାନଆଡ଼କୁ ଗମନ କରୁଥିଲେ ; ଏମନ୍ତ ସମୟରେ ମାର୍ଗମଧ୍ୟରେ ଗୋଟିଏ ରୋଗାତୁର କଙ୍କାଳମାତ୍ରାବଶିଷ୍ଟ ମନୁଷ୍ୟ ତାଙ୍କର ଦୃଷ୍ଟିଗୋଚର ହେଲା ; ସେ ବନ୍ଧୁହୀନ, ଅର୍ଥଶୂନ୍ୟ ଏବଂ ବାସହୀନ ହୋଇ ରାଜମାର୍ଗରେ ଏକପାର୍ଶ୍ୱରେ ପଡ଼ିଅଛି । ତାହାର ନିଃଶ୍ୱାସ ରୁଦ୍ଧ ହୋଇ ଆସୁଅଛି ଏବଂ ମୁଖରୁ ବାକ୍ୟସ୍ଫୂର୍ତ୍ତି ହେଉ ନାହିଁ । ସେ ମୃତ୍ୟୁକୁ ସମ୍ମୁଖରେ ଦେଖି ଅବିରଳ ଅଶ୍ରୁଧାରା ବିସର୍ଜ୍ଜନ କରୁଅଛି । ରାଜପୁତ୍ର ସାରଥିଠାରୁ ଆଶାନୁରୂପ ଉତ୍ତର ପାଇ କରୁଣଭାବରେ କହିଲେ "ଆହା, ମନୁଷ୍ୟର ସ୍ୱାସ୍ଥ୍ୟ ସ୍ୱପ୍ନପ୍ରାୟ କ୍ଷଣସ୍ଥାୟୀ ; ଏହିପରି କଷ୍ଟ ଓ ଦୁଃଖ ପ୍ରତ୍ୟକ୍ଷ କଲାଉତ୍ତାରେ କେଉଁ ଜ୍ଞାନୀ ବ୍ୟକ୍ତି କହିବ ଯେ ମନୁଷ୍ୟ ସୁଖଭୋଗ କରୁଅଛି ?" ଏହିପ୍ରକାର କରୁଣୋକ୍ତି କରି ସେ ରଥକୁ ନେଉଟାଇବା ନିମନ୍ତେ ସାରଥିକୁ ଆଦେଶ ପ୍ରଦାନ କଲେ ।

ଆଉ ଦିନେ ରାଜକୁମାର ନଗରର ପଶ୍ଚିମଦ୍ୱାରଦେଇ ନିଜ ଉଦ୍ୟାନଆଡ଼କୁ ଯାଉଥିଲେ । ମାର୍ଗମଧ୍ୟରେ ବସ୍ତ୍ରାଚ୍ଛାଦିତ ଗୋଟିଏ ମୃତଦେହ ଦର୍ଶନ କଲେ । ମୃତବ୍ୟକ୍ତିର ବନ୍ଧୁମାନେ ବିକଳକଣ୍ଠରେ ରୋଦନ କରି ଶବପଛରେ ଗମନ କରୁଅଛନ୍ତି । କେତେଗୁଡ଼ିଏ ସ୍ତ୍ରୀ ଶୋକବିହ୍ୱଳା ହୋଇ ନିଜ ନିଜ ବକ୍ଷରେ କରାଘାତ କରୁଅଛନ୍ତି, ମାର୍ଗର ଧୂଳିରେ ଅବଲୁଣ୍ଠିତ ହେଉଅଛନ୍ତି

ଏବଂ ବୃଦ୍ଧବୃଦ୍ଧାଗଣଙ୍କ ଶୋକଧ୍ୱନି ଦ୍ୱାରା ଆକାଶ ବିଦୀର୍ଣ୍ଣ କରୁଅଛନ୍ତି । ବୁଦ୍ଧଦେବ ଏ ସମସ୍ତ ଦର୍ଶନ କରି ନିଜ ସହଚରମାନଙ୍କୁ କହିବାକୁ ଲାଗିଲେ "ହାୟ ! ସେ ଯୌବନରେ କି କାର୍ଯ୍ୟ ଯାହାର ପରିଣାମ ଏପରି ଶୋଚନୀୟ । ସେ ଦେହରେ କି ଫଳ ଯାହାର ଧ୍ୱଂସ ଅନିବାର୍ଯ୍ୟ । ଏ କ୍ଷଣଭଙ୍ଗୁର ଜୀବନ କେବଳ ଦୁଃଖପୂର୍ଣ୍ଣ ଅଟେ । ଯଦ୍ୟପି ମନୁଷ୍ୟମାନଙ୍କର ରୋଗ, ଜରା, ମୋହ ପ୍ରଭୃତି ନ ଥାନ୍ତା, ଆହା, ତାହାହେଲେ ମନୁଷ୍ୟଜୀବନ କିପରି ସୁଖମୟ ହୁଅନ୍ତା !" ଏହା କହି ସିଦ୍ଧାର୍ଥ ରାଜପ୍ରାସାଦକୁ ପ୍ରତ୍ୟାଗମନ କଲେ

ଆଉ ଦିନେ ଯୁବରାଜ ସିଦ୍ଧାର୍ଥ ନଗରର ଉତ୍ତରଦ୍ୱାରଦେଇ ତାଙ୍କର ସୁଶୋଭିତ ଉଦ୍ୟାନଆଡ଼କୁ ଯାଉଥିଲେ । ମାର୍ଗମଧ୍ୟରେ ପ୍ରଶାନ୍ତଚେତା, ଜିତେନ୍ଦ୍ରିୟ, ନିର୍ବିକାର, ଭିକ୍ଷାପାତ୍ର-ହସ୍ତ ଜଣେ ସନ୍ନ୍ୟାସୀ ତାଙ୍କର ନୟନ-ଗୋଚର ହେଲେ । ତାଙ୍କୁ ଦେଖି ସିଦ୍ଧାର୍ଥ ସାରଥିଙ୍କୁ ପଚାରିଲେ "ଏ ବ୍ୟକ୍ତି କିଏ ?" ସାରଥି ଉତ୍ତର କଲେ "ମହାଭାଗ ! ଏ ଜଣେ ସନ୍ନ୍ୟାସୀ । ଏ ସମୁଦାୟ ସଂସାରର ସୁଖ, ଭୋଗାଭିଳାଷ ଏବଂ ଲୋଭ ପରିତ୍ୟାଗ କରି ଏବଂ ସଂସାରର ମୋହମାୟାରୁ ଅପସୃତ ହୋଇ କଠୋର ଯୋଗସାଧନ କରୁଅଛନ୍ତି । ଦୁରନ୍ତ ରିପୁମାନେ ଏହାଙ୍କର ବଶୀଭୂତ । ଏହି ସନ୍ନ୍ୟାସୀ ଭିକ୍ଷାଦ୍ୱାରା ଜୀବନଯାତ୍ରା ନିର୍ବାହ କରି ପ୍ରଶାନ୍ତ ଭାବରେ କାଳଯାପନ କରୁଅଛନ୍ତି ।" ରାଜକୁମାର ଏହା ଶୁଣି କହିଲେ "ସନ୍ନ୍ୟାସବ୍ରତ ସର୍ବୋତ୍କୃଷ୍ଟ ଅଟେ । ଏହା ଆମ୍ଭମାନଙ୍କୁ ପରମ ସୁଖ ପ୍ରଦାନ କରିବ ଏବଂ ସତ୍ୟ ଓ ମୁକ୍ତି ଆଡ଼କୁ ନେଇଯିବ । ଏହା ସର୍ବ-କାଳରେ ଜ୍ଞାନୀମାନଙ୍କ କର୍ତ୍ତୃକ ପ୍ରଶଂସିତ ହୋଇଅଛି । ଏହି ବ୍ରତ ଆମ୍ଭର ଅବଲମ୍ବନୀୟ ।" ଏହା କହି ଯୁବରାଜ ରଥ ନେଉଟାଇବା ପାଇଁ ସାରଥିଙ୍କୁ ଆଦେଶ ଦେଲେ ।

କିଛିଦିନଉତ୍ତାରେ ବୁଦ୍ଧଦେବ ସଂସାର ପରିତ୍ୟାଗ କରିବାକୁ ସଂକଳ୍ପ କଲେ ଏବଂ ପିତା ଓ ବିମାତାଙ୍କ ନିକଟରେ ନିଜ ଅଭିପ୍ରାୟ ବ୍ୟକ୍ତ କଲେ । ପିତା ତାଙ୍କୁ ଏହି ସଂକଳ୍ପରୁ ନିବୃତ୍ତ କରାଇବା ନିମନ୍ତେ ଅନେକ ଉପଦେଶ ପ୍ରଦାନ କଲେ । ରୂପବତୀ ଯଶୋଧାରା ବିଳାପ କରିବାକୁ ଲାଗିଲେ ; କିନ୍ତୁ

ବୁଦ୍ଧଦେବ କୌଣସି କଥା ଶୁଣିଲେ ନାହିଁ । ଦିନେ ନିଶୀଥସମୟରେ ଯଶୋଧାରାଙ୍କ ନିଦ୍ରିତା ଦେଖି ନିଃଶବ୍ଦରେ ଶଯ୍ୟା ତ୍ୟାଗ କରି ସୁରମ୍ୟ ରାଜପ୍ରାସାଦରୁ ବହିର୍ଗତ ହେଲେ । ପିତାଙ୍କ ଅଶ୍ୱାଳୟସ୍ଥ ଗୋଟିଏ ବେଗଗାମୀ ଘୋଟକର ପୃଷ୍ଠରେ ଆରୋହଣକରି ଉକ୍ତ ଅଶ୍ୱର ରକ୍ଷକକୁ ସଙ୍ଗରେ ଘେନି ସେହି ତମୋମୟୀ ରଜନୀରେ ନିବିଡ଼ ଅରଣ୍ୟମଧ୍ୟରେ ଭ୍ରମଣ କରିବାକୁ ଲାଗିଲେ । ରଜନୀ ପ୍ରଭାତ ହେଲାକ୍ଷଣି ଘୋଟକରୁ ଅବତରଣ କରି, ଛନ୍ଦକନାମକ ଅଶ୍ୱପାଳକୁ ନିଜର ବହୁମୂଲ୍ୟ ହାର ପ୍ରଦାନ କରି ତାହାକୁ ବିଦାୟ ଦେଲେ ଏବଂ ଏକାକୀ ପଦବ୍ରଜରେ ଭ୍ରମଣ କରିବାକୁ ଲାଗିଲେ ।

"ଲଳିତବିସ୍ତର" ନାମକ ବୌଦ୍ଧଗ୍ରନ୍ଥ ପାଠ କଲେ ଜଣାଯାଏ ଯେ ବୁଦ୍ଧଦେବ ଯେଉଁ ସ୍ଥାନରେ ଅଶ୍ୱ ଏବଂ ଅଶ୍ୱପାଳକୁ ବିଦାୟ ଦେଇଥିଲେ ସେଠାରେ କୀର୍ତ୍ତିସ୍ତମ୍ଭ (ସ୍ତୂପ) ନିର୍ମିତ ହୋଇଥିଲା । ଚୀନଦେଶୀୟ ପରିବ୍ରାଜକ ହୁଏନସାଂ କୁଶୀନଗରକୁ ଯିବାସମୟରେ ମାର୍ଗମଧ୍ୟରେ ଏହି ସ୍ତୂପ ଦର୍ଶନ କରିଥିଲେ । ବର୍ତ୍ତମାନ ଗୋରକ୍ଷପୁର ନଗରର ଦକ୍ଷିଣପୂର୍ବ ଭାଗରେ ପ୍ରାୟ ପଞ୍ଚବିଂଶ କ୍ରୋଶ ଦୂରରେ ଉକ୍ତ କୁଶୀନଗରର ଭଗ୍ନାବଶେଷ ଦୃଷ୍ଟିଗୋଚର ହୁଏ ।

ବୁଦ୍ଧଦେବ ଗୃହ ତ୍ୟାଗ କରି ବୈଶାଳୀନାମକ ନଗରରେ ଉପସ୍ଥିତ ହୋଇ ଶତଶିଷ୍ୟପରିବେଷ୍ଟିତ ଜଣେ ବିଖ୍ୟାତ ପଣ୍ଡିତଙ୍କ ନିକଟକୁ ଗମନ କଲେ । ସେଠାରେ କିଛିଦିନ ଅଧ୍ୟୟନ କଲେ, ମାତ୍ର ଆଶାନୁରୂପ ଫଳ ନ ପାଇବାରୁ ସେସ୍ଥାନ ପରିତ୍ୟାଗ କଲେ । ଅନନ୍ତର ସେ ମଗଧଦେଶୀୟ ରାଜଧାନୀ ରାଜଗୃହନାମକ ନଗରକୁ ଗମନ କଲେ । ଏହା ମହାଭାରତରେ ଗିରିବ୍ରଜ ନାମରେ ଉଲ୍ଲିଖିତ ଜରାସନ୍ଧ ରାଜାଙ୍କର ରାଜଧାନୀ ଥିଲା । ସେଠାରେ ସପ୍ତଶତଶିଷ୍ୟପରିବେଷ୍ଟିତ ଜଣେ ଆଚାର୍ଯ୍ୟଙ୍କ ନିକଟରେ ଅଧ୍ୟୟନ କରିବାକୁ ଲାଗିଲେ, ମାତ୍ର କଷ୍ଟପୂର୍ଣ୍ଣ ସଂସାରରୁ ମୁକ୍ତି ଲଭିବାର କୌଣସି ଉପାୟ ନ ପାଇ ବୁଦ୍ଧଦେବ ଉକ୍ତ ଆଚାର୍ଯ୍ୟଙ୍କଠାରୁ ପ୍ରତ୍ୟାବର୍ତ୍ତନ କଲେ । ରାଜଗୃହର ତତ୍କାଳୀନ ରାଜା ବିମ୍ବିସାର ସିଦ୍ଧାର୍ଥଙ୍କ ସଙ୍ଗେ ସାକ୍ଷାତ୍ କରି ତାହାଙ୍କ ନିରତିଶୟ ସମାଦର

କରଥିଲେ । ଉକ୍ତ ରାଜଧାନୀର ସମୀପବର୍ତ୍ତୀ ଗୋଟିଏ ନିବିଡ଼ ବହୁତାପସାଧ୍ୟୁଷିତ ଗହନମଧ୍ୟରେ ବାସ କରି, ବହୁକାଳ ପର୍ଯ୍ୟନ୍ତ ଅନ୍ୟାନ୍ୟ ଋଷିମାନଙ୍କ ପରି ସ୍ୱର୍ଗ କାମନା କରି କଠୋରତପସ୍ୟାବଲମ୍ବନପୂର୍ବକ ଦୁରନ୍ତ ରିପୁମାନଙ୍କୁ ଦମନ କଲେ । ଏଥିଉତ୍ତାରେ ତାଙ୍କର ଏହି ବିଶ୍ୱାସ ଜନ୍ମିଲା ଯେ ସକାମ ତାପସବ୍ରତ ସୁକଠୋର ହେଲେହେଁ ଆତ୍ମାରି ଶାନ୍ତି ସମ୍ପାଦନ କରି ନ ପାରେ । ଯଦି ସ୍ୱର୍ଗରେ କାମନା ରହିଲା, ତେବେ କାମନାର ଫଳ ଯେଉଁ ଦୁଃଖ, ତାହାର କିପରି ବିନାଶ ହେବ ? ଅନନ୍ତର ପ୍ରୋକ୍ତ ବନ ପରିତ୍ୟାଗ କରି କଠୋର ତପଶ୍ଚରଣ ଦ୍ୱାରା ବାସନାଗ୍ନିକୁ ନିର୍ବାଣ କରିବା ନିମିତ୍ତ ସେ ବନାନ୍ତରପ୍ରସ୍ଥାନର ସଙ୍କଳ୍ପ କଲେ ।

ସିଦ୍ଧାର୍ଥ କିଛିଦୂର ଯାଇ ପଶ୍ଚିମଦିଗରେ ଗୟାଶୀର୍ଷପର୍ବତ ନିକଟରେ ନିରଞ୍ଜନାନଦୀତଟରେ ଉପସ୍ଥିତ ହୋଇ ସମ୍ମୁଖରେ ବିସ୍ତୃତ ଅରଣ୍ୟର ଶୋଭା ଦେଖି ଅତ୍ୟନ୍ତ ପ୍ରୀତ ହେଲେ ଏବଂ ସେହି ସ୍ଥାନରେ ତାହାଙ୍କର ଅଦୃଷ୍ଟପୂର୍ବ ଓ ଅଶ୍ରୁତପୂର୍ବ ପ୍ରଗାଢ଼ ସାଧନ ଆରମ୍ଭ କଲେ । ସେ ଏହିଠାରେ ଛଅବର୍ଷକାଳ ଘୋର ତପସ୍ୟା କରି ଅବଶେଷରେ ଗୋଟିଏ ଅଶ୍ୱତ୍ଥବୃକ୍ଷମୂଳରେ ଗଭୀର ସମାଧିସାଗରରେ ନିମଗ୍ନ ହୋଇ ବୁଦ୍ଧତ୍ୱ ଲାଭ କଲେ ଅର୍ଥାତ୍ ତାଙ୍କ ମନରେ ଏହି ଦୃଢ଼ ବିଶ୍ୱାସ ଜନ୍ମିଲା ଯେ ସେ ସତ୍ୟଜ୍ଞାନ ଲଭି ଅଛନ୍ତି ଏବଂ ଐହିକ ଦୁଃଖର ପ୍ରକୃତ ହେତୁ ଏବଂ ମୁକ୍ତିପଥର ତତ୍ତ୍ୱଜ୍ଞାନକୁ ଆୟତ୍ତ କରିଅଛନ୍ତି । ସେ ବିଚାରିଲେ ଯେ ସେ ଚାରିଗୋଟି ସତ୍ୟ ପାଇଅଛନ୍ତି । ପ୍ରଥମ, ଜୀବନ ଦୁଃଖପୂର୍ଣ୍ଣ ; ଦ୍ୱିତୀୟ, ଦୁଃଖର କାରଣ ତୃଷ୍ଣା ବା କାମନା ; ତୃତୀୟ, କାମନାବିନାଶରେ ଦୁଃଖର ବିନାଶ ; ଚତୁର୍ଥ, ବିଶୁଦ୍ଧ ନୀତିମୟ ଜୀବନଦ୍ୱାରା କାମନାର ବିନାଶ ଓ ନିର୍ବାଣ, ତେଣୁ ଦୁଃଖର ମଧ୍ୟ ବିନାଶ । ଅତଏବ ଏହି ସମୟରୁ ସେ ଆପଣାଙ୍କୁ ବୁଦ୍ଧ (ଅର୍ଥାତ୍ ତତ୍ତ୍ୱଜ୍ଞାନୀ) ନାମରେ ପରିଚିତ କରାଇଲେ । ସେହି ନିରଞ୍ଜନାତଟଭୂମି ବର୍ତ୍ତମାନ ବୁଦ୍ଧଗୟା ନାମରେ ଖ୍ୟାତ ଏବଂ ସେହି ଅଶ୍ୱତ୍ଥବୃକ୍ଷ ମହାବୋଧିଦ୍ରୁମ ଆଖ୍ୟାରେ ଅଭିହିତ ହେଉଅଛି । ତାଙ୍କର ଧର୍ମକୁ ମନୁଷ୍ୟମାନଙ୍କ ନିକଟରେ ପ୍ରଚାର କରିବେ, ନା ସ୍ୱୟଂ ସମସ୍ତ ଜ୍ଞାନ ହୃଦୟସ୍ଥ କରି ରଖିବେ,

ଏହି ଚିନ୍ତା ତାଙ୍କୁ କିଛିକାଳଯାଏ ସନ୍ଦିହାନ କରିଥିଲା । ଅବଶେଷରେ ସେ ମନୁଷ୍ୟମାନଙ୍କର ଦୁଃଖବିଷୟ ଚିନ୍ତା କରି ଦୟାର୍ଦ୍ର ହେଲେ ଏବଂ ସ୍ୱମତ ଜନ-ସାଧାରଣଙ୍କଠାରେ ପ୍ରଚାର କରିବାକୁ ଲାଗିଲେ । ଏହିରୂପେ ବୌଦ୍ଧଧର୍ମର ସୃଷ୍ଟି ହେଲା ।

ଏଥିଉତ୍ତାରେ ବୁଦ୍ଧଦେବ ବିଦ୍ୟା ଓ ଧର୍ମାଲୋଚନାର ପ୍ରଧାନ ସ୍ଥଳ ବାରାଣସୀନଗରକୁ ଗମନ କଲେ ଏବଂ ବାରାଣସୀର ମୃଗଦାବକାନନରେ ପୂର୍ବ-ପରିଚିତ ତାଙ୍କର କେତେକ ସହଚର ତାଙ୍କ ମତରେ ସର୍ବାଦୌ ଦୀକ୍ଷିତ ହେଲେ । ଅନନ୍ତର ଶତ ଶତ ଲୋକ ତାଙ୍କ ଧର୍ମରେ ବିଶ୍ୱାସ କରିବାକୁ ଲାଗିଲେ । ଏହି ସମୟରେ ମଗଧରାଜ୍ୟାଧିପତି ବିମ୍ବିସାର ବୁଦ୍ଧଦେବଙ୍କୁ ସ୍ୱକୀୟ ରାଜଧାନୀ ରାଜଗୃହନାମକ ନଗରକୁ ଆହ୍ୱାନ କଲେ । ସେ ରାଜଗୃହରେ ଉପସ୍ଥିତ ହୋଇ କାଳାନ୍ତକନାମକ ପ୍ରସିଦ୍ଧ ମଠରେ ସହସ୍ର ଲୋକଙ୍କୁ ଗମ୍ଭୀର-ଭାବପୂର୍ଣ୍ଣ ବହୁ ଉପଦେଶ ପ୍ରଦାନ କରିଥିଲେ । ମଗଧରାଜଧାନୀର ଚତୁର୍ଦ୍ଦିଗରେ ପାଞ୍ଚଗୋଟି ପର୍ବତ ଥିଲା, ସେଥିମଧ୍ୟରୁ ଗୋଟିକର ନାମ "ଗୃଧ୍ରଶିଖର ;" ବୁଦ୍ଧ-ଦେବ ଏହି ଗିରିଶିଖରୋପରି ଦଣ୍ଡାୟମାନ ହୋଇ ଅନେକ ଉପଦେଶ ପ୍ରଦାନ କରିଥିଲେ ।

ମଗଧେ ନିବାସ ସମୟରେ କାତ୍ୟାୟନ, ସାରିପୁତ୍ର ଏବଂ ମୌଦ୍ଗଲ୍ୟାୟନ ନାମକ ତିନିଜଣ ବିଖ୍ୟାତ ଶିଷ୍ୟ ସର୍ବଦା ତାଙ୍କର ସହଚର ଥିଲେ । ବୁଦ୍ଧଦେବ ଏହିପ୍ରକାରେ ମଗଧାଧିପତିଙ୍କ ସଙ୍ଗରେ ବନ୍ଧୁଭାବରେ କେତେକ ବର୍ଷ ଯାପନ କଲେ । ଅନନ୍ତର ମଗଧାଧିପତି ସ୍ୱପୁତ୍ର ଅଜାତଶତ୍ରୁ କର୍ତ୍ତୃକ ନିହତ ହେଲେ । ଏହି ସମୟରେ ଶ୍ରାବସ୍ତିନାମକ ସ୍ଥାନରେ ଅନାଥପିଣ୍ଡଦନାମକ ଜଣେ ଧନଶାଳୀ ବଣିକ୍ ତାହାଙ୍କୁ ଗୋଟିଏ ସୁରମ୍ୟ ଅଟ୍ଟାଳିକା ପ୍ରଦାନ କଲେ । ଶ୍ରାବସ୍ତି କୋଶଳରାଜ୍ୟର ରାଜଧାନୀ ଥିଲା । ବୁଦ୍ଧଦେବ ଶିଷ୍ୟବର୍ଗସହିତ ଏହି ସ୍ଥାନରେ ବାସ କରି ଅନେକ ଧର୍ମୋପଦେଶ ଦେବାକୁ ଲାଗିଲେ । ଏଠାରେ କୋଶଳ-ରାଜ ପ୍ରସେନଜିତ୍ ସ୍ୱଧର୍ମ ତ୍ୟାଗ କରି ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ । ଏଥିଉତ୍ତାରେ ବୁଦ୍ଧଦେବ ପିତୃରାଜଧାନୀ କପିଳବାସ୍ତୁନଗରକୁ ଗମନ କଲେ ।

ସେଠାରେ ନାନା ଅଭୁତକ୍ରିୟା ସମ୍ପାଦନ କରି ସମୁଦାୟ ଶାକ୍ୟବଂଶଙ୍କୁ ନିଜ ଧର୍ମରେ ଦୀକ୍ଷିତ କରାଇଲେ । ସ୍ତ୍ରୀଜାତିମଧ୍ୟରେ ସର୍ବାଦୌ ତାଙ୍କର ପତ୍ନୀ ଯଶୋଧାରା ଏହି ଅଭିନବ ଧର୍ମ ଗ୍ରହଣ କରିଥିଲେ । ସପ୍ତତିବର୍ଷ ବୟସ ସମୟରେ ବୁଦ୍ଧଦେବ ରାଜଗୃହନଗରକୁ ପ୍ରତ୍ୟାଗମନ କଲେ । ବୁଦ୍ଧଦେବଙ୍କ ପୂର୍ବଶତ୍ରୁ ପିତୃହନ୍ତା ରାଜା ଅଜାତଶତ୍ରୁ ବର୍ତ୍ତମାନ ନିଜର ସମସ୍ତ ପାପ ସ୍ୱୀକାର କରି ତାଙ୍କଠାରେ କ୍ଷମା ପ୍ରାର୍ଥନା କଲେ ଏବଂ ପ୍ରକାଶ୍ୟରୂପେ ତାଙ୍କ ଧର୍ମ ଗ୍ରହଣ କଲେ । ଏ ସ୍ଥାନରୁ ପ୍ରତିଗମନ କଲାବେଳେ ସହସ୍ର ସହସ୍ର ଶିଷ୍ୟ ବୁଦ୍ଧଦେବଙ୍କୁ ବେଷ୍ଟନ କରିବାକୁ ଲାଗିଲେ । ବୁଦ୍ଧଦେବ ଅସଂଖ୍ୟଶିଷ୍ୟପରିବେଷ୍ଟିତ ହୋଇ ଗଙ୍ଗାତଟରେ ଉପସ୍ଥିତ ହେଲେ । ସେଠାରେ ଖଣ୍ଡେ ଅତି ବୃହତ୍ ଶିଳା ଉପରେ ଦଣ୍ଡାୟମାନ ହୋଇ ରାଜଗୃହନଗରୀ ପ୍ରତି ଦୃଷ୍ଟିନିକ୍ଷେପ କରି କହିଲେ "ଏ ପ୍ରିୟ ନଗରୀ ଆଉ ମୋ ନୟନପଥରେ ପଡ଼ିବ ନାହିଁ ।" ପଥମଧ୍ୟରେ ବୈଶାଲୀନଗରୀ ଦର୍ଶନ କଲେ । ସେଠାରୁ ବିଦାୟ ଗ୍ରହଣ କରି କୁଶୀନଗରଆଡ଼କୁ ଗମନ କରୁଥିଲେ, ମାତ୍ର ମାର୍ଗମଧ୍ୟରେ ତାହାଙ୍କର ଶାରୀରିକ ବଳ ନିସ୍ତେଜ ହୋଇ-ପଡ଼ିଲା । ବୁଦ୍ଧଦେବ ଶିଷ୍ୟବର୍ଗସହିତ ଏକ ବନମଧ୍ୟରେ ପ୍ରବେଶ କରି ଗୋଟିଏ ଶାଳତରୁ ତଳେ ଉପବିଷ୍ଟ ହେଲେ । ଏହିଭାବରେ ବିଶ୍ରାମ କରୁଅଛନ୍ତି, ଏମନ୍ତ ସମୟରେ ତାହାଙ୍କର ଆତ୍ମା ଅନିତ୍ୟ ଦେହରୁ ଅପସାରିତ ହୋଇ ମହାନିର୍ବାଣ ଅବସ୍ଥାରେ ପ୍ରବିଷ୍ଟ ହେଲା ।

## ପ୍ରଶ୍ନ

୧ । ପ୍ରବୃତ୍ତ, ମୁକ୍ତି, ବିରାଗ, ପତନ, ରୁଗ୍ଣ, ଭିନ୍ନ ଏମାନଙ୍କର ବିପରୀତାର୍ଥ-ବୋଧକ ଶବ୍ଦ ବୋଲ ।

୨ । ଯେଉଁ ତିନୋଟି ଘଟନାଦ୍ୱାରା ଶାକ୍ୟସିଂହଙ୍କର ମତିଗତି ବଦଳି-ଯାଇଥିଲା ତାହାର ବିବରଣ ନିଜ କଥାରେ ଲେଖ ।

୩ । ବୁଦ୍ଧଦେବ ତପସ୍ୟାଦ୍ୱାରା ଯେଉଁ ଚାରୋଟି ସତ୍ୟ ନିରୂପଣ କରି-ଥିଲେ ତାହା ନିର୍ଦ୍ଦେଶ କର ।

୪ । ଶ୍ଳଥଚର୍ମୀ, ସିଦ୍ଧାର୍ଥ, ଅଜାତଶତ୍ରୁ, ଅଦୃଷ୍ଟପୂର୍ବ, ବହୁତାପସାଧ୍ୟୁଷିତ, ଭିକ୍ଷାପାତ୍ର-ହସ୍ତ, ଉତ୍ଥାନଶକ୍ତିରହିତ ଏହି ପଦମାନଙ୍କର ସମାସ ବ୍ୟାଖ୍ୟା କର ।

୫ । ମାନବଲୀଳାସମ୍ବରଣ, ସକାମ ତାପସବ୍ରତ, ଏ ଜୀବନ ବୀଣାଶବ୍ଦରୁ ଭୁଲି, କ୍ଷଣଭଙ୍ଗୁର ଜୀବନ, ସଂସାରର ମୋହମାୟା ଏଗୁଡ଼ିକର ସୁସ୍ପଷ୍ଟ ବ୍ୟାଖ୍ୟା ଲେଖ ।

୬ । ପ୍ରସୂତ, ପ୍ରଭାବ, ଅଭିହିତ ଉତ୍ଥାନ, ପରିଚୟ, ଆଦେଶ, ଶାନ୍ତ ଏହି ଶବ୍ଦଗୁଡ଼ିକ ଯେଉଁ ଯେଉଁ ଧାତୁରୁ ନିଷ୍ପନ୍ନ ସେହି ସେହି ଧାତୁରୁ ନିଷ୍ପନ୍ନ ତୃଚ୍ ବା ତଚ୍ଛୋଽଧିକ ଶବ୍ଦ କୋଳପାଅ ।

୭ । 'ଅସିଆମହାଦେଶର କେଉଁ କେଉଁ ଦେଶର ଅଧିକାଂଶ ଲୋକେ ବୌଦ୍ଧଧର୍ମାବଲମ୍ବୀ ?

୮ । ଓଡ଼ିଶାରେ କ କ ବୌଦ୍ଧକୀର୍ତ୍ତି ଅଛି ?

# ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ

( କଳହଂସ କେଦାର ବୃତ୍ତ )

ଦେଖଇ ନେତ୍ର ଯାହା ଚଉଦିଗର,
ସେ ସବୁର ଅଟଇ ମୁଁ ଅଧୀଶ୍ୱର ।

ମହୀମଣ୍ଡଳେ ନାହିଁ ଏମନ୍ତ ଜନ,
ମୋ ଅଧିକାର ଲୋଭେ କରିବ ରଣ ।

ତୀରଆଡ଼ରେ ନୀଳ ସମୁଦ୍ରପାଏ,
ଫୁଲଫଳଶୋଭିତ ବନ ଲତାଏ ।

## ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ

କୀଟ ପତଙ୍ଗ ପକ୍ଷୀ କେଶରୀ କରୀ,
ପଶୁ ସୃଷ୍ଟି ଯେତେକ ସବୁ ମୋହର ।

ବିଜନତା ! କାହିଁ ତୋ ବେଶ ମୋହନ
ଯେ ବେଶେ ମୋହିଲୁ ତୁ ମୁନିନୟନ ।

ବରଂ ନିବାସ ଭଲ ରଣକ୍ଷେତ୍ରରେ,
ଭୟରେ ସଦା ଯହିଁ ହୃଦୟ ଥରେ ।

କିନ୍ତୁ ଏ ଭୀମ ସ୍ଥଳେ ରାଜ୍ୟ ପ୍ରାପତ,
ଅଟଇ ମୋ ବିଚାରେ ଅଧମ ଗତ ।

ସୁନ୍ଦର ଦେବତୁଲ୍ୟ ନର-ଆନନ,
ଦେଖିବ ନାହିଁ ଆଉ ମୋର ନୟନ ।

ନିଭିବ ଏଥି ମୋର ଜୀବନ-ଦୀପ,
ଏ ବାରତା ନ ଯିବ ଜନସମୀପ ।

ମଧୁମୟ ମନୁଷ୍ୟ କଣ୍ଠର ଧ୍ୱନି,
ତୋଷିବ ନାହିଁ ଆଉ ଶ୍ରବଣ ବେନି ।

ମୋ କଣ୍ଠୁଁ ଶବ୍ଦ ଯେବେ ହୁଏ ବାହାର,
ଚମକିପଡ଼େ ଯେହ୍ନେ ଆଉ କାହାର ।

ଭ୍ରମନ୍ତି ଚଉପାଶେ ପଶୁନିକର,
ନୁହନ୍ତି ଦେଖି ମୋତେ ଭୟେ କାତର ।

ଜାଣି ନାହାନ୍ତି କେବେଁ ନରପ୍ରଭାବ,
ଏଣୁ ତାଙ୍କର ଏହି ଅନାସ୍ଥାଭାବ ।

କାହିଁ ବନ୍ଧୁତା, କାହିଁ ପ୍ରେମ ସୁନ୍ଦର,
ଯାର ପ୍ରାପତ-ଯୋଗୁଁ ଦେବତା ନର ।

ଥାଆନ୍ତା ଯଦି ମୋର ବିହଙ୍ଗପକ୍ଷ,
ଲଂଘି ଭୀଷଣ ଗିରି, ସମୁଦ୍ର ବକ୍ଷ ।

ଦେଖନ୍ତି ପ୍ରିୟଜନ-ମୁଖ କମଳ,
ହୁଅନ୍ତା ଏ ସନ୍ତପ୍ତ ପ୍ରାଣ ଶୀତଳ ।

ଧରମ ସତ୍ୟ ପଥେ ନିତ୍ୟ ଯିଁଷିର,
ନାଚନ୍ତା ଆନନ୍ଦରେ ହୃଦି ମୋହର ।

ପ୍ରବୀଣ ଜନଠାରୁ ସଦୁପଦେଶ,
ଲଭି ହୁଅନ୍ତି ମୁହିଁ ବିଜ୍ଞ ବିଶେଷ ।

ତରୁଣ ସଙ୍ଗେ ମିଳି ନାନାରଙ୍ଗରେ,
ହରନ୍ତି କାଳ ଆହା କି ଆମୋଦରେ ।

ଧର୍ମ ଆହା ସେ କିବା ଅମୂଲ୍ୟ ଧନ,
ସର କୁହଇ ତାର ମଣି କାଞ୍ଚନ ।

ସ୍ୱର୍ଗୀୟ ମାଧୁରେ ସଦା ସୁନ୍ଦର,
ମହୀମଣ୍ଡଳେ କାହିଁ ତା ପଟାନ୍ତର ।

ଏମନ୍ତ ଧର୍ମ ରତ୍ନ ଦେବପୂଜିତ,
ଅଟଇ ଏ ସ୍ଥଳରେ ଅପରିଚିତ ।

ଦେବ-ଅର୍ଚ୍ଚନା-ବାଦ୍ୟ ଏ ଗିରିଗଣ,
କରି ନାହାନ୍ତି ଥରେସୁଦ୍ଧା ଶ୍ରବଣ ।

ଧର୍ମ-ଉତ୍ସବ-ସୁଖ ଏ ଘୋର ବନ,
କଦାପି କରି ନାହିଁ ବାରେ ଦର୍ଶନ ।

ବୃଥା ଜୀବନ ଯହିଁ ନାହିଁ ଧରମ,
ପଶୁଲୀଳା-ସାଧନ ମାତ୍ର କରମ ।

ରେ ବାୟୁ ! କ୍ରୀଡ଼ନକ ମୁହିଁ ତୋହର
ମୋର ପ୍ରାର୍ଥନା ବାରେ ଶ୍ରବଣ କର ।

ବହିଆଣ ସ୍ୱଦେଶ ସୁସମାଚାର,
ପାଇବ ନାହିଁ ଆଉ ଦର୍ଶନ ଯାର ।

ଶୁଣି ମୋ ପ୍ରିୟ ବାର୍ତ୍ତା ଏ ଭୀମ ସ୍ଥଳେ
ଭାସିବ ନେତ୍ର ମୋର ଆନନ୍ଦ-ଜଳେ ।

ମୋ ପେନ ଭାଳନ୍ତ କି ବନ୍ଧୁନକର ?
ମୋତେ ଦେଖିବାକୁ କି କାନ୍ଦେ ଅନ୍ତର ?

କହ କହ ସମୀର ! ସବୁ ଫିଟାଇ,
ବନ୍ଧୁମଧ୍ୟରେ ମୋର କେହି କି ନାହିଁ ?

ନିଘୃଣ ମୋ ହୃଦୟ, ନୋହି ନିଷ୍ଠୁର
କହ ବାରତା, କର ସଂଶୟ ଦୂର ।

ଆହା କିବା ଅଦ୍ଭୁତ ମନର ଗତି,
ଅଚିନ୍ତ୍ୟନୀୟ ଅଟେ ତାର ଶକତି ।

କ୍ଷଣମାତ୍ରକେ ମନ କରେ ଦର୍ଶନ
ଏହି ଅପରସୀମ ଖଣ୍ଡ ଭୁବନ ।

ଜଣାଇ ସହଜରେ ମନୁଷ୍ୟ ମତି,
ପ୍ରଭଞ୍ଜନର ବେଗ ଆଲୋକ-ଗତି ।

ଯେତେବେଳେ ସ୍ୱଦେଶ ପଡ଼ଇ ମନେ
ବିଚାରଇ ମୁଁ ଅଛି ନିଜ ସଦନେ ।

ଆତ୍ମୀୟ ବନ୍ଧୁବର୍ଗ ଗୃହଆଡ଼ରେ
ତାଙ୍କ ସଙ୍ଗତେ ଯେହ୍ନେ ମୁଁ କାଳ ହରେ ।

କିନ୍ତୁ ପୂରୁବ କଥା କଲେ ସ୍ମରଣ,
ନୈରାଶ୍ୟ-ସାଗରରେ ବୁଡ଼ଇ ମନ ।

ବୃଥା ଭାବନା ଆଉ କରବ ନାହିଁ ।
ଭାବନାରେ ଆନନ୍ଦ ମିଳଇ କାହିଁ ?

ନୀଡ଼-କୋଳରେ ସୁପ୍ତ ପକ୍ଷୀନିକର ।
ଆଶ୍ରିଲେଣି ପଶୁଏ ନିଜ ଗହ୍ୱର ।

ଉପସ୍ଥିତ ରଜନୀକାଳ ଗମ୍ଭୀର,
ନହୁବ କୁଟୀରରେ ଏବେ ଶରୀର ।

ଅଛନ୍ତି ସର୍ବସ୍ଥଳେ ଜଗଦୀଶ୍ୱର
ଦୟାମୟ ଫେଡ଼ିବେ ଦୁଃଖ ମୋହର ।

ଈଶ୍ୱର-ଦୟା ଆହା କିବା ଉଦାର
ଲଘୁ କରଇ ଦୁଃଖି-ହୃଦୟଭାର ।

ଜନମାଏ ସନ୍ତୋଷ ମନୁଷ୍ୟ ମନେ,
ମଣ୍ଡଇ ହୃଦ-ରାଜ୍ୟ ଶାନ୍ତି-ରତନେ ।

## ପ୍ରଶ୍ନ

୧ । ପ୍ରଥମ ଦଶଧାଡ଼ି ମଧ୍ୟରେ ଥିବା ତଉଦଗର, କରବ ରଣ, ଯେତେକ, ସବୁ, ନବାସ, ଗଢ଼ ଏ ପଦଗୁଡ଼ିକର ଅନ୍ୱୟ କର ।

୨ । ନହୁବ, ଲଘୁ କରଇ, କ୍ରୀଡ଼ନକ ଏ ପଦମାନଙ୍କର ସହଜ ଓଡ଼ିଆ ପ୍ରତିଶବ୍ଦ ଦିଅ ।

୩ । ମନର ଗଢ଼ ଓ ଧର୍ମ ବିଷୟରେ କବିତାରେ ଯାହା ପଢ଼ିଅଛ ତାହାର ଆବୃତ୍ତି କର ।

୪ । ବଜ୍ରନଡା କପରି ଅବସ୍ଥାରେ ଭଲ ଲାଗେ, ପୁଣି କପରି ଅବସ୍ଥାରେ ଭଲ ଲାଗେ ନାହିଁ ?

୫ । ଏ କବିତାରେ ଯେଉଁ ଛନ୍ଦ ବା ବୃତ୍ତ ବ୍ୟବହୃତ ହୋଇଅଛି ତାହାର ନାମ ଓ ଲକ୍ଷଣ ନିର୍ଦ୍ଦେଶ କର ।

## ଉଲ୍କାପିଣ୍ଡ

କୌଣସି୨ ରଜନୀରେ ଆମ୍ଭେମାନେ ଯେଉଁ ନକ୍ଷତ୍ରପାତ ଦର୍ଶନ କରୁଁ ତାହା ବାସ୍ତବିକ ଉଲ୍‌କାପାତ ; ନକ୍ଷତ୍ରପାତ ନୁହେଁ । ଇଦାନୀନ୍ତନ ଜ୍ୟୋତିର୍ବିଦ୍‌ମାନେ ପର୍ଯ୍ୟବେକ୍ଷଣଦ୍ୱାରା ଉଲ୍‌କାପିଣ୍ଡ ବିଷୟରେ ଯେଉଁସବୁ କଥା ନିରୂପଣ କରିଅଛନ୍ତି ସେଥିମଧ୍ୟରୁ କେତୋଟି ପ୍ରଧାନ କଥା ନିମ୍ନରେ ସଙ୍କଳିତ ହେଲା ।

ଉଲ୍‌କାପିଣ୍ଡ ବିବିଧ ପ୍ରକାରରେ ପୃଥିବୀଉପରେ ପତିତ ହୁଏ । ତାହାର ପତନର ସଙ୍ଗେ ସଙ୍ଗେ ଗୋଟିଏ ସୁଦୀର୍ଘ ଆଲୋକରେଖା ଶୂନ୍ୟମାର୍ଗରେ ପ୍ରଧାବିତ ହୁଏ । କେତେକେତେବେଳେ ଆକାଶମଣ୍ଡଳରେ ଗୋଟିଏ କ୍ଷୁଦ୍ର କୃଷ୍ଣବର୍ଣ୍ଣ ମେଘ ସମୁଦିତ ହୁଏ ଏବଂ ଅତ୍ୟନ୍ତ ଭୀଷଣନିନାଦସହକାରେ ବହୁସଂଖ୍ୟକ ଉଲ୍‌କାପିଣ୍ଡ ସେହି ମେଘମଧ୍ୟରୁ ବର୍ଷିତ ହୁଏ । ଏହି ଉଲ୍‌କାପିଣ୍ଡ-(ପ୍ରସ୍ତରଖଣ୍ଡ) ମାନଙ୍କର ଆୟତନଗତ ବିଭିନ୍ନତା ଦେଖାଯାଏ, କିନ୍ତୁ ପରୀକ୍ଷାଦ୍ୱାରା ସପ୍ରମାଣ ହୋଇଅଛି ଯେ ସେମାନେ ଏକ ଉପାଦାନରେ ଗଠିତ ଏବଂ ସେମାନଙ୍କର ବାହ୍ୟ ରୂପ ଏକପ୍ରକାର ଅଟେ । ମେଘବିମୁକ୍ତ ନିର୍ମଳ ନଭୋମଣ୍ଡଳରେ ମଧ୍ୟ ଉଲ୍‌କାପାତ ସଂଘଟିତ ହୁଏ ।

ଉଲ୍‌କାପାତସଂକ୍ରାନ୍ତ ଗୋଟିଏ ପ୍ରଧାନ କଥା ଏହି ଯେ ତାହା ସର୍ବଦା ବକ୍ରଭାବରେ ପତିତ ହୁଏ, କଦାପି ଲମ୍ବଭାବରେ ପଡ଼େ ନାହିଁ । ଉଲ୍‌କାପିଣ୍ଡର ଗତିବିଷୟ ଆଲୋଚନା କଲେ ଲୋକ ବିସ୍ମୟାବିଷ୍ଟ ହୁଅଇ । କୌଣସି ପାର୍ଥିବ ବସ୍ତୁର ଏପରି ବେଗଶାଳିତା ଦେଖାଯାଏ ନାହିଁ । ୧୭୯୮ ଖ୍ରୀଷ୍ଟାବ୍ଦରେ ଦୁଇଗୋଟି ଉଲ୍‌କାପିଣ୍ଡର ବେଗ ନିରୂପିତ ହୋଇଥିଲା । ସେଥିମଧ୍ୟରୁ ଗୋଟିକର

ବେଗ ପ୍ରତିସେକଣ୍ଡରେ ୨୫ ମାଇଲ, ଦ୍ୱିତୀୟଟିର ୧୭ ମାଇଲରୁ ନ୍ୟୁନ ଏବଂ ୨୧ ମାଇଲରୁ ଅଧିକ ନୁହେ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ସେହି ଦୁଇ ଉଲ୍‌କା ମଧ୍ୟରୁ ଗୋଟିଏ ଭୂତଳରେ ପତିତ ହୋଇ ପୁନର୍ବାର ଊର୍ଦ୍ଧ୍ୱକୁ ଉଠିଯିବାର ଦେଖାଗଲା । ୧୮୩୮ ଖ୍ରୀଷ୍ଟାବ୍ଦର ଅଗଷ୍ଟ ମାସରେ ସ୍କଟଲଣ୍ଡ ଦେଶରେ ଅନେକଗୁଡ଼ିଏ ଉଲ୍‌କାପିଣ୍ଡ ପର୍ଯ୍ୟବେକ୍ଷିତ ହୋଇଥିଲା । ସେମାନଙ୍କର ବେଗ ହାରାହାରି ପ୍ରତିସେକଣ୍ଡରେ ୨୪୦ ମାଇଲ ନିରୂପିତ ହୋଇଅଛି । ପୃଥିବୀର ବେଗ ପ୍ରତିସେକଣ୍ଡରେ ପ୍ରାୟ ୨୦ ମାଇଲ ଅଟେ । ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଅଛି ଯେ ଉପରଲିଖିତ ଉଲ୍‌କାପିଣ୍ଡ ସମୁଦାୟ ପୃଥିବୀ ଅପେକ୍ଷା ଦ୍ୱାଦଶଗୁଣ ପ୍ରବଳତର ବେଗରେ ପରିଭ୍ରମଣ କରଇ ।

ସମୁଦାୟ ଉଲ୍‌କାପିଣ୍ଡର ଆୟତନ ସମାନ ନୁହେ । ପୃଥିବୀରେ ଯେଉଁ ସମସ୍ତ ଉଲ୍‌କାପିଣ୍ଡ ପଡ଼ିଅଛି ତନ୍ମଧ୍ୟରେ ଦକ୍ଷିଣଆମେରିକା-ଅନ୍ତର୍ଗତ ବ୍ରାଜିଲ ରାଜ୍ୟରେ ଯେଉଁ ଦୁଇଗୋଟି ପତିତ ହୋଇ ରକ୍ଷିତ ଅଛି ତାହା ସର୍ବାପେକ୍ଷା ବୃହତ୍ । ତାହାର ବ୍ୟାସ ପ୍ରାୟ ପଞ୍ଚହସ୍ତ ଅଟେ । ଯେଉଁ ବର୍ଷ ଭୁବନବିଖ୍ୟାତ ପଣ୍ଡିତ ସକ୍ରେଟିସ୍ ଜନ୍ମଗ୍ରହଣ କଲେ ସେହି ବର୍ଷ ଗ୍ରୀସଦେଶ-ଅନ୍ତଃପାତୀ କୌଣସି ନଗରରେ ଗୋଟିଏ ଉଲ୍‌କାପିଣ୍ଡ ପଡ଼ିଥିଲା । ତାହା ଏଡ଼େ ବୃହତ୍ ଥିଲା ଯେ ତାହା ଗୋଟିଏ ଶକଟରେ ସମ୍ପୂର୍ଣ୍ଣ ବୋଝ ହୋଇପାରନ୍ତା ।

ଏହିସବୁ ଉଲ୍‌କାପିଣ୍ଡ ପୃଥିବୀପୃଷ୍ଠରୁ କେତେ ଊର୍ଦ୍ଧ୍ୱରେ ଅବସ୍ଥିତ, ଜ୍ୟୋତିର୍ଗଣିତଜ୍ଞ ପଣ୍ଡିତମାନେ ତାହା ଗଣନା କରିଅଛନ୍ତି ଉଲ୍‌କାମାନଙ୍କର ଉଚ୍ଚତାର ଅତ୍ୟନ୍ତ ବୈଷମ୍ୟ ଲକ୍ଷିତ ହୁଏ । କାହାର ଉଚ୍ଚତା ୬ ମାଇଲ, କାହାର ବା ୧୪୦ ମାଇଲ, କାହାର ବା ୪୬୦ ମାଇଲ ।

ପରୀକ୍ଷାଦ୍ୱାରା ସପ୍ରମାଣ ହୋଇଅଛି ଯେ, ସମୁଦାୟ ଉଲ୍‌କାପିଣ୍ଡ ଏକ-ପ୍ରକାର ଉପାଦାନରେ ଗଠିତ ଏବଂ ସେମାନଙ୍କ ବାହ୍ୟ ଦୃଶ୍ୟ ସମାନ ଅଟେ । ଲୌହ, ତାମ୍ର, ଟିନ, ଗନ୍ଧକ, ଅଙ୍ଗାର ପ୍ରଭୃତି ତେରଗୋଟି ପାର୍ଥିବ ପଦାର୍ଥ ଉଲ୍‌କାପିଣ୍ଡରେ ଲକ୍ଷିତ ହୁଏ । ପୃଥିବୀସ୍ଥ ଖଣିମଧ୍ୟରେ ବିଶୁଦ୍ଧ ଲୌହ ମିଳେ ନାହିଁ, ତହିଁରେ ଅନ୍ୟ ବସ୍ତୁ ମିଶ୍ରିତ ଥାଏ, କିନ୍ତୁ ଉଲ୍‌କାପିଣ୍ଡରୁ ଯେଉଁ ଲୌହ

ମିଳେ ତାହା ବିଶୁଦ୍ଧ ଅଟେ । ଉଲ୍‌କାପିଣ୍ଡର ଉପରଭାଗ କୃଷ୍ଣବର୍ଣ୍ଣ ଏବଂ ଦଗ୍ଧବତ୍ ପ୍ରତୀୟମାନ ହୁଏ ।

ଉଲ୍‌କାପାତର କାରଣବିଷୟରେ ଗୋଟିଏ ପ୍ରଧାନ ମତ ଲକ୍ଷିତ ହୁଏ । ପ୍ରଥମତଃ ଏହି ଯେ କେତେଗୁଡ଼ିଏ ସୂକ୍ଷ୍ମ ପାର୍ଥିବ ପଦାର୍ଥ ବାଷ୍ପବତ୍ ପୃଥିବୀର ଉପରଭାଗରୁ ନୀତ ହୋଇ ଅନ୍ତରୀକ୍ଷରେ ଏକତ୍ର ହେଉଥାଏ । ପରେ ସେହି ପଦାର୍ଥମାନ ଘନୀଭୂତ ହେଲାଉତ୍ତାରେ ମାଧ୍ୟାକର୍ଷଣ ସେମାନଙ୍କୁ ପୁନର୍ବାର ଭୂତଳକୁ ଆନୟନ କରେ । କେବଳ ମାଧ୍ୟାକର୍ଷଣର ବଳ ପ୍ରଯୁକ୍ତ ହେଲେ ସେମାନେ ଲମ୍ବଭାବରେ ପଡ଼ନ୍ତେ, ମାତ୍ର ବାୟୁସ୍ରୋତର ପ୍ରଭାବରୁ ସେମାନେ ତିର୍ଯ୍ୟକ୍ ଗତି ଅବଲମ୍ବନ କରନ୍ତି । ଦ୍ୱିତୀୟତଃ କେହି୨ ପଣ୍ଡିତ ନିର୍ଦ୍ଦେଶ କରିଅଛନ୍ତି ଯେ ଉଲ୍‌କାପିଣ୍ଡ ଅଗ୍ନ୍ୟୁତ୍ପାତସମୟରେ ଆଗ୍ନେୟଗିରିରୁ ନିର୍ଗତ ହୋଇ ଊର୍ଦ୍ଧ୍ୱକୁ ପ୍ରକ୍ଷିପ୍ତ ହୁଏ ଏବଂ ଅତ୍ୟନ୍ତ ବେଗରେ ପୃଥିବୀ ଉପରେ ପତିତ ହୁଏ । ତୃତୀୟତଃ କେହି୨ ଅନୁମାନ କରନ୍ତି ଯେ ଚନ୍ଦ୍ରଲୋକରେ ଯେଉଁସବୁ ଆଗ୍ନେୟଗିରି ଅଛି ତହିଁରୁ ଉଲ୍‌କାପିଣ୍ଡସବୁ ନିର୍ଗତ ହୋଇ ମାଧ୍ୟାକର୍ଷଣଦ୍ୱାରା ଭୂତଳରେ ପତିତ ହୁଏ । ଚତୁର୍ଥତଃ ଆଧୁନିକ ପଣ୍ଡିତମାନେ ନାନା ଅନୁସନ୍ଧାନଦ୍ୱାରା ପ୍ରଥମୋକ୍ତ ମତତ୍ରୟକୁ ଭ୍ରାନ୍ତିସଙ୍କୁଳ ବୋଲି ସପ୍ରମାଣ କରି ମୀମାଂସା କରିଅଛନ୍ତି ଯେ ଗ୍ରହମାନେ ଯେପରି ନିର୍ଦ୍ଦିଷ୍ଟ ନିୟମାନୁସାରେ ସୂର୍ଯ୍ୟମଣ୍ଡଳକୁ ପ୍ରଦକ୍ଷିଣ କରନ୍ତି, ଏହି ସମୁଦାୟ ଉଲ୍‌କାପିଣ୍ଡ ମଧ୍ୟ ସେହିପ୍ରକାରରେ ସୂର୍ଯ୍ୟମଣ୍ଡଳର ଚାରିଆଡ଼ରେ ଭ୍ରମଣ କରନ୍ତି । ଏମାନଙ୍କର ଭ୍ରମଣପଥର ସହିତ ପୃଥିବୀର ଭ୍ରମଣପଥର ସଙ୍ଘାତ ଅଛି । ଯେତେବେଳେ ପୃଥିବୀ ଏବଂ ଉଲ୍‌କାପିଣ୍ଡସମୁଦାୟ ଏକକାଳରେ ସେହି ସଙ୍ଘାତ ସ୍ଥାନରେ ଉପସ୍ଥିତ ହୁଅନ୍ତି, ସେତେବେଳେ ଉଲ୍‌କାପିଣ୍ଡ ସମସ୍ତ ଭୂତଳରେ ପତିତ ହୁଏ ; ଅଥବା ସେତେବେଳେ ନ ପଡ଼ି ପୃଥିବୀସ୍ଥ ବାୟୁରାଶିମଧ୍ୟରେ ପ୍ରବିଷ୍ଟ ହୋଇ, ବାୟୁର ପ୍ରତିରୋଧଶକ୍ତିଦ୍ୱାରା କିୟତ୍‌ପରିମାଣରେ ମନ୍ଦଗତି ହୋଇ କ୍ରମେ୨ ମାଧ୍ୟାକର୍ଷଣ ପ୍ରଭାବରୁ ଭୂପୃଷ୍ଠରେ ପଡ଼ଇ ।

କୌଣସି ୨ ସମୟରେ ଏତେ ଉଲ୍‌କାପାତ ହୁଏ ଯେ ତାହା ଦେଖିଲେ ହୃଦୟ ବିସ୍ମୟାର୍ଣ୍ଣବରେ ନିମଗ୍ନ ହୁଏ । ଆରବଦେଶର ଇତିହାସବେତ୍ତାମାନେ

ଲେଖିଅଛନ୍ତି ଯେ ଯେଉଁ ରାତ୍ରିରେ ଇବ୍ରାହିମ ନରପତି ପ୍ରାଣତ୍ୟାଗ କଲେ, ସେହି ରାତ୍ରିରେ ଏତେ ଉଲ୍‌କାପିଣ୍ଡ ବର୍ଷିତ ହୋଇଥିଲା ଯେ ତାହା ଅଗ୍ନିବୃଷ୍ଟି ବୋଲି ପ୍ରତୀୟମାନ ହେଲା । ଖ୍ରୀଷ୍ଟାବ୍ଦ ୧୮୬୬ ସାଲର ନବେମ୍ବର ମାସର ୧୨ ତାରିଖରେ ଆମେରିକାରେ ଯେଉଁ ଅଦ୍ଭୁତ ଉଲ୍‌କାପାତ ହୋଇଥିଲା, ତାହା ଅତ୍ୟନ୍ତ ବିସ୍ମୟଜନକ ଅଟେ । ସେହି ରାତ୍ରି ନଅଘଣ୍ଟାଠାରୁ ପରଦିବସ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଏହି ଅଦ୍ଭୁତବ୍ୟାପାର ନୟନଗୋଚର ହୋଇଥିଲା । ଅସଂଖ୍ୟ ଉଲ୍‌କାପିଣ୍ଡ ଆବର୍ତ୍ତିତ ହୋଇ ସମସ୍ତ ନଭୋମଣ୍ଡଳକୁ ଆଚ୍ଛନ୍ନ କରି-ପକାଇଲା । ସମୁଦାୟ ଅନୁଜ୍ଜ୍ୱଳ ଅଗ୍ନିମୟ ନକ୍ଷତ୍ରରାଜିରେ ପରିପୂର୍ଣ୍ଣ ହେଲା । ଯେତେବେଳଯାଏ ଉଲ୍‌କାପିଣ୍ଡସମୂହ ଅବିରଳଭାବରେ ଗଗନମଣ୍ଡଳ ଆଚ୍ଛନ୍ନ କରିଥିଲା, ତେତେବେଳଯାଏ ସେମାନଙ୍କର ସଂଖ୍ୟା ଗଣନା କରିବାର ସମ୍ଭାବନା ନ ଥିଲା । ଅନନ୍ତର ଯେତେବେଳେ ସେମାନେ ବିରଳ ହୋଇଆସିଲେ, ତେତେବେଳେ ବୋଷ୍ଟନ ନଗରସ୍ଥ ଜଣେ ପଣ୍ଡିତ ଗଣନାଦ୍ୱାରା ସ୍ଥିର କଲେ ଯେ, ପ୍ରତିମିନଟରେ ପ୍ରାୟ ଛଅଶତ ଉଲ୍‌କା ଆବର୍ତ୍ତିତ ହେଉଅଛି । ଏହି ଦୃଶ୍ୟ ସାତଘଣ୍ଟାଯାଏ ପ୍ରତ୍ୟକ୍ଷ ହୋଇଥିଲା । ଏଣୁ ସ୍ପଷ୍ଟରୂପେ ଜଣାଯାଉଅଛି ଯେ ସେହି ରଜନୀରେ ପ୍ରାୟ ଦୁଇଲକ୍ଷ ବାବନହଜାର ଉଲ୍‌କାପିଣ୍ଡ ଦୃଷ୍ଟିଗୋଚର ହୋଇଥିଲା, କିନ୍ତୁ ଗଣନା କରିବାପୂର୍ବରେ ଉଲକାସଂଖ୍ୟା ଊଣା ହୋଇଯାଇ ଥିଲା, ସେଥିପୂର୍ବରେ ତଦପେକ୍ଷା ଅଧିକ ସଂଖ୍ୟା ଦୃଷ୍ଟିଗୋଚର ହୋଇଥିଲା । ଏଣୁ ସହଜରେ ଅନୁମିତ ହୋଇପାରେ ଯେ, ଉକ୍ତ ରାତ୍ରିରେ ପ୍ରାୟ ତିନିଲକ୍ଷ ଉଲ୍‌କା ବୋଷ୍ଟନନଗରର ଆକାଶରେ ଆବର୍ତ୍ତିତ ହୋଇଥିଲା । ଖ୍ରୀଷ୍ଟାବ୍ଦ ୧୮୮୫ ସାଲର ନବେମ୍ବର ମାସର ୨୭ ତାରିଖରେ ଆମ୍ଭମାନଙ୍କର ଏହି ଉତ୍କଳ ପ୍ରଦେଶରେ ପ୍ରଭୂତ ଉଲ୍‌କାପାତରୂପ ଅଦ୍ଭୁତ ଦୃଶ୍ୟ ଉତ୍କଳବାସୀଙ୍କର ନୟନଗୋଚର ହୋଇଥିଲା ।

ଉଲ୍‌କାପାତ ସମୟରେ ଯେଉଁ ଆଲୋକ ନୟନଗୋଚର ହୁଏ ତାହାର କାରଣବିଷୟରେ ଦୁଇଗୋଟି ଭିନ୍ନ ମତ ଲକ୍ଷିତ ହୁଏ । ପ୍ରଥମ ମତ ଏହି ଯେ, ଉଲ୍‌କାସମୂହର ପ୍ରଚଣ୍ଡ ବେଗରେ ବାୟୁ ଏପ୍ରକାର ସଙ୍କୁଚିତ ହୋଇଯାଏ

ଯେ ତାହା ପ୍ରଜ୍ୱଳିତ ହୁଏ ; ଅଥବା ବାୟୁର ତାପ ଏତେ ଅଧିକ ହୁଏ ଯେ ତଦ୍ୱାରା ଉଲ୍‌କାପିଣ୍ଡସମୂହ ପ୍ରଜ୍ୱଳିତ ହୁଏ । ଦ୍ୱିତୀୟ ମତ ଏହି ଯେ, ପୃଥିବୀର ସନ୍ନିହିତ ବାୟୁମଣ୍ଡଳର ଉପରଭାଗରେ ତାଡ଼ିତବାୟୁ ଅଛି । ଉଲ୍‌କାପିଣ୍ଡ ଯେତେବେଳେ ସେହି ତାଡ଼ିତବାୟୁକୁ ଆଘାତ କରେ, ସେତେବେଳେ ଅଗ୍ନି ଏବଂ ଆଲୋକ ସମୁତ୍ପାଦିତ ହୁଏ ।

ବର୍ଷମଧ୍ୟରେ କୌଣସି୨ ନିର୍ଦ୍ଦିଷ୍ଟ ସମୟରେ ଅଧିକ ଉଲ୍‌କାପାତ ଦେଖାଯାଏ । ଏଣୁ ଜ୍ୟୋତିର୍ବିଦ୍‌ମାନେ ଅନୁମାନ କରନ୍ତି ଯେ ସେହି୨ ସମୟରେ ଉଲ୍‌କାପିଣ୍ଡମାନେ ନଭୋମଣ୍ଡଳର ଯେଉଁ ଅଂଶରେ ଭ୍ରମଣ କରନ୍ତି, ପୃଥିବୀ ମଧ୍ୟ ସେହି ଅଂଶର ନିକଟବର୍ତ୍ତୀ ହେବାରୁ ଅଧିକସଂଖ୍ୟକ ଉଲ୍‌କାପାତ ଦୃଷ୍ଟିପଥାରୂଢ଼ ହୁଏ ।

## ପ୍ରଶ୍ନ

୧ । ଉଦ୍‌ଦାମିନ୍ତନ, ଉପାଦାନ, ମାଧ୍ୟାକର୍ଷଣ, ତର୍ଯ୍ୟକ, ଗତି, ଏମାନଙ୍କର ଅର୍ଥ ବୋଲ ।

୨ । ପର୍ଯ୍ୟବେକ୍ଷଣ, ମୀମାଂସା, ପ୍ରତୀତି, ପ୍ରବନ୍ଧ, ଗତି, ଏ ଶବ୍ଦମାନ ଯେଉଁ ଯେଉଁ ଧାତୁରୁ ନିଷ୍ପନ୍ନ ସେହି ସେହି ଧାତୁରୁ ନିଷ୍ପନ୍ନ ତିନି-ଗୋଟି ବା ତତୋଽଧିକ ଶବ୍ଦ କହ ।

୩ । ବିସ୍ମୟାବିଷ୍ଟ, ଭ୍ରାନ୍ତିସଙ୍କୁଳ, ଆୟତନଗତ, ଏ ପଦମାନଙ୍କର ସମାସ-ବ୍ୟାଖ୍ୟା କର ।

୪ । ଉଲ୍‌କାର ଉପାଦାନବିଷୟରେ କଣ ଜାଣ ?

୫ । ସୁଇଜରଲଣ୍ଡ ଓ. ଗ୍ରୀସ୍ ଏହି ଦୁଇ ଦେଶର ଅବସ୍ଥିତି ବର୍ଣ୍ଣନ କର ।

# ବାନର



୯ମ ପାଠ

ସ୍ତନନ୍ଧୟ ବା ସ୍ତନ୍ୟପାୟୀ ଜୀବଗଣମଧ୍ୟରେ ବାନର ଅନ୍ତର୍ଗତ । ସେମାନଙ୍କର ଆକାରପ୍ରକାର ଅନେକାଂଶରେ ମନୁଷ୍ୟର ଆକାରସହିତ ମିଳେ । ପୃଥିବୀରେ ନାନାବିଧ ବାନର ଦୃଷ୍ଟିଗୋଚର ହୁଅନ୍ତି । କାହାର ଲାଙ୍ଗୁଳ ଦୀର୍ଘ, କାହାର ବା କ୍ଷୁଦ୍ର, କାହାର ଅବା ଆଦୌ ଲାଙ୍ଗଳ ନାହିଁ । କାହାର କାହାର ଗାଲରେ ଏକପ୍ରକାର ଥଳୀ ଥାଏ ; ସେଥିରେ ସେମାନେ ଖାଦ୍ୟ ପୂରାଇ ରଖନ୍ତି । ଗଠନ ବିଷୟରେ ବାନରର ଶରୀର ଅନେକାଂଶରେ

ମନୁଷ୍ୟ ଶରୀରପରି । ବାନରର ଚାରୋଟି ପାଦ, କିନ୍ତୁ ତାହାର ପାଦଗୁଡ଼ିକ ମନୁଷ୍ୟର କର ବା ହସ୍ତପରି ଦିଶେ ବୋଲି ବାନରକୁ ଚତୁଷ୍କର ଜୀବ ବୋଲିଯାଏ । ସାଧାରଣତଃ ବାନରୀମାନେ ଏକାଧିକ ଶାବକ ପ୍ରସବ କରନ୍ତି ନାହିଁ ।

ବାନରଜାତି ଦୁଇ ପ୍ରଧାନ ଶ୍ରେଣୀରେ ବିଭକ୍ତ; (୧) ପ୍ରାଚୀନ ମହାଦେଶୀୟ, (୨) ନୂତନ ମହାଦେଶୀୟ । ଏସିଆ ଓ ଆଫ୍ରିକାର ବାନରବର୍ଗ ଲାଙ୍ଗୁଳଦ୍ୱାରା କିଛି ଧରିପାରନ୍ତି ନାହିଁ, କିନ୍ତୁ ସେମାନଙ୍କ ମଧ୍ୟରୁ ଅନେକଙ୍କର ଗାଲରେ ଥଳୀ ଥାଏ ଏବଂ ସେମାନେ ବୃଦ୍ଧାଙ୍ଗୁଳିକୁ ଅନ୍ୟାନ୍ୟ ଅଙ୍ଗୁଳିର ସମ୍ମୁଖକୁ ଆଣିପାରନ୍ତି । ଆମେରିକାର ବାନରମାନେ ଲାଙ୍ଗୁଳଦ୍ୱାରା ବୃକ୍ଷର ଶାଖାକୁ ଭିଡ଼ି ଧରିପାରନ୍ତି, କିନ୍ତୁ ସେମାନେ ବୃଦ୍ଧାଙ୍ଗୁଳିକୁ ଅନ୍ୟାନ୍ୟ ଅଙ୍ଗୁଳିର ସମ୍ମୁଖକୁ ଆଣିପାରନ୍ତି ନାହିଁ ।

ପ୍ରାଚୀନମହାଦେଶୀୟ ବାନରବୃନ୍ଦ ବନମାନୁଷ, ହନୁମାନ୍ ଓ ମର୍କଟ ଏହି ତିନିଶ୍ରେଣୀରେ ବିଭକ୍ତ ।

ବନମାନୁଷ ନାମତଃ ମନୁଷ୍ୟ ହେଲେହେଁ ମନୁଷ୍ୟପଦବାଚ୍ୟ ନୁହେ । ବନବାସୀ ଅସଭ୍ୟ ମନୁଷ୍ୟମାନେ ବନମାନୁଷ ବୋଲି ଅଭିହିତ ହୁଅନ୍ତି ନାହିଁ । ଯେଉଁ ବାନରବର୍ଗ ଅନେକାଂଶରେ ମନୁଷ୍ୟପରି ଦିଶନ୍ତି ସେହିମାନଙ୍କୁ ବନମାନୁଷ ବୋଲିଯାଏ । ସେମାନଙ୍କର ଲାଙ୍ଗୁଳ ନାହିଁ ଏବଂ ଗାଲରେ ଖାଦ୍ୟ ପୂରାଇ ରଖିବାର ଥଳୀ ମଧ୍ୟ ନାହିଁ । ସେମାନେ ଦୁଇପାଦ ଉପରେ ଭରା ଦେଇ କିୟତ୍‌ପରିମାଣରେ ଠିଆହୋଇ ଚାଲିପାରନ୍ତି । ମନୁଷ୍ୟପରି ସେମାନଙ୍କର ଦୁଇଦନ୍ତପାଟିରେ ବତିଶଗୋଟି ଦାନ୍ତ ଅଛି ।

ବନମାନୁଷବର୍ଗର ଅନ୍ତର୍ଗତ ଆଫ୍ରିକାର ଗରିଲାଗଣ ଓ ଶିମ୍ପାଞ୍ଜିଗଣ ଏବଂ ସୁମାତ୍ରା ଜାବା ପ୍ରଭୃତି ଦ୍ୱୀପର ଓରାଂଉଟାନ୍‌ଗଣ ।

ଗରିଲାମାନଙ୍କ ଦେହ ଘନ ଲୋମରେ ଆଚ୍ଛାଦିତ । ମୁଖ, କର୍ଣ୍ଣ ଓ ପାଦତଳ ଘନକୃଷ୍ଣବର୍ଣ୍ଣ ଓ ଲୋମଶୂନ୍ୟ । ଗ୍ରୀବା ଅତି କ୍ଷୁଦ୍ର । ମୁଖରେ ବ୍ୟାଘ୍ରଦନ୍ତପରି ଦୀର୍ଘ ଦନ୍ତ ଥିବାରୁ ଗରିଲାମାନେ ଅତି କୁତ୍ସିତ ଓ ଭୟଙ୍କର ଦିଶନ୍ତି ।

ପୁରୁଷ-ଗରିଲ୍ଲା ସାଧାରଣ ମନୁଷ୍ୟ ଅପେକ୍ଷା ଡେଙ୍ଗା ଏବଂ ତାହାର ଦେହ ମଧ୍ୟ ମନୁଷ୍ୟଦେହ ଅପେକ୍ଷା ଅଧିକ ସ୍ଥୂଳ । ସେମାନଙ୍କର ହସ୍ତ ଏତେ ଲମ୍ବା ଯେ ପଶ୍ଚପାଦଉପରେ ଭର ଦେଇ ଛିଡ଼ାହେଲେ ସେମାନେ ହସ୍ତଦ୍ୱାରା ମୃତ୍ତିକା ସ୍ପର୍ଶ କରିପାରନ୍ତି । ସ୍ତ୍ରୀ-ଗରିଲ୍ଲା ପୁରୁଷ-ଗରିଲ୍ଲା ଅପେକ୍ଷା ଖେଳଟ । ଗରିଲ୍ଲାମାନେ ଫଳଭୋଜୀ । ସେମାନେ ବନଯାକ ଆହାର ଅନ୍ୱେଷଣ କରି ବୁଲନ୍ତି, ରାତିରେ ବୃକ୍ଷର ଦୁଇତିନୋଟି ଡାଳକୁ ବଙ୍କାଇ ଏକତ୍ର କରି ସେଥିରେ ଲତାପତ୍ରାଦିର ଆଚ୍ଛାଦନଦ୍ୱାରା ଏକପ୍ରକାର ଘର ନିର୍ମାଣ କରନ୍ତି । ସେ ଘରେ ସ୍ତ୍ରୀ-ଗରିଲ୍ଲା ଶାବକସହିତ ନିଦ୍ରାଯାଏ । ପୁରୁଷ ଗରିଲ୍ଲା ନିଜ ପରିବାରକୁ ହିଂସ୍ରଜନ୍ତୁର ଆକ୍ରମଣରୁ ରକ୍ଷା କରିବା ପାଇଁ ସେହି ବୃକ୍ଷମୂଳରେ ସତର୍କ ପ୍ରହରୀରୂପେ ବସିଥାଏ । ସେମାନେ ତିନିଚାରିଦିନରୁ ଅଧିକ ଏକ ସ୍ଥାନରେ ରହନ୍ତି ନାହିଁ । ଆହତ ଓ ଆକ୍ରାନ୍ତ ନ ହେଲେ ସେମାନେ ମନୁଷ୍ୟକୁ ଆକ୍ରମଣ କରନ୍ତି ନାହିଁ । ଯେତେବେଳେ ଶତ୍ରୁକୁ ଆକ୍ରମଣ କରନ୍ତି, ତାକୁ ଚାପିଧରି ଦନ୍ତ ଦ୍ୱାରା ତାହାର ଶରୀରକୁ ବିଦୀର୍ଣ୍ଣ କରିପକାନ୍ତି । ଗରିଲ୍ଲାସମ୍ବନ୍ଧରେ ଅନେକ ଗଳ୍ପ ପ୍ରଚଳିତ ଅଛି, କିନ୍ତୁ ସେଗୁଡ଼ିକର ଅଧିକାଂଶ ଅଲୀକ ଅଥବା କଳ୍ପିତ ଗଳ୍ପ ଥିବାର ଜଣାଯାଇଅଛି ।

ମନୁଷ୍ୟ ସଙ୍ଗରେ ଶିମ୍ପାଞ୍ଜିଜାତୀୟ ବନମାନୁଷର ଆକୃତିଗତ ସାଦୃଶ୍ୟ ଅଧିକ ଥିବାର ଦେଖାଯାଏ । ଏମାନେ ଗରିଲ୍ଲା ଅପେକ୍ଷା ବଳବିକ୍ରମରେ ହୀନ ଅଟନ୍ତି । ଏମାନଙ୍କର ମୁଣ୍ଡ, ଗ୍ରୀବା ଓ ପୃଷ୍ଠ କୃଷ୍ଣବର୍ଣ୍ଣ ଘନ ଲୋମଦ୍ୱାରା ଆଚ୍ଛାଦିତ ; ବକ୍ଷ ଓ ଉଦରର ଲୋମ ସେତେ ଘନ ନୁହେ । ଏମାନଙ୍କର କର୍ଣ୍ଣ ଦୀର୍ଘ, ନାସିକା ଚେପ୍ଟା, କପାଳ ନୀଚ ଓ ହସ୍ତ ଅନତିଦୀର୍ଘ । ଏମାନଙ୍କର ଦୈହିକ ବଳ ସାମାନ୍ୟ ନୁହେ । ବୃକ୍ଷର ଯେଉଁ ଶାଖା ଜଣେ ବଳବାନ୍ ମନୁଷ୍ୟ ନୁଆଁଇ ପାରିବ ନାହିଁ, ଗୋଟାଏ ଶିମ୍ପାଞ୍ଜି ତାହାକୁ ଅନାୟାସରେ ଭାଙ୍ଗିପକାଇପାରେ । ଶୈଶବାବସ୍ଥାରେ ପୋଷିଲେ ଏମାନେ ପୋଷମାନନ୍ତି । ଏମାନଙ୍କର ବିଶେଷ-ରୂପେ ଅନୁକରଣଶକ୍ତି ଓ ବୁଦ୍ଧି ଅଛି । କୌଣସି ପଶୁଶାଳାରେ ରକ୍ଷିତ ଗୋଟିଏ ଶିମ୍ପାଞ୍ଜି ଏକ ହସ୍ତରେ ଚଷକ ବା ପାତ୍ର ଏବଂ ଅନ୍ୟ ହସ୍ତରେ ଚାମଚ ଧରି

ମନୁଷ୍ୟପରି ଦୁଧ ଅଥବା ଗୁ ଖାଇବାର ଓ ଏକଠାରୁ ଦଶ ପର୍ଯ୍ୟନ୍ତ ଗଣି-ଶିଖିବାର ଦେଖାଯାଇଅଛି ।

ଓରାଂଉଟାନ୍‌ମାନଙ୍କର ଗାତ୍ରର ବର୍ଣ୍ଣ ନାଲିଆ ବା ମାଟିଆ ଥିବାର ଦେଖାଯାଏ । ଏମାନେ ଗରିଲ୍ଲା ବା ଶିମ୍ପାଞ୍ଜି ଅପେକ୍ଷା କ୍ଷୁଦ୍ରତର ଅଟନ୍ତି । ସେମାନଙ୍କର ଉଚ୍ଚତା ପ୍ରାୟ ତିନିହାତ ହେବ । କର୍ଣ୍ଣ ବଡ଼, କପାଳ ଉଚ୍ଚ, ଉପରର ଓଷ୍ଠ ଯେପରି ଦୀର୍ଘ ସେହିପରି ଆୟତ । ଏମାନେ ମାଟିରେ ଭଲ ଚାଲିପାରନ୍ତି ନାହିଁ, କିନ୍ତୁ ଗଛର ଡାଳେ ଡାଳେ ଦ୍ରୁତବେଗରେ ବିଚରଣ କରିପାରନ୍ତି । ଏମାନେ ପରିବାରବଦ୍ଧ ହୋଇ ବିଚରଣ କରନ୍ତି । ବୃକ୍ଷର କୋମଳ ପତ୍ର, ବଂଶବୃକ୍ଷର ଅଙ୍କୁର ଓ ପଣସଫଳ ଏମାନଙ୍କର ବଡ଼ ପ୍ରିୟ ଖାଦ୍ୟ । ଏମାନେ ଶୋଇଲାବେଳେ ବୃକ୍ଷର ୧୦ । ୧୫ ହସ୍ତ ଉଚ୍ଚ ଶାଖାର ମଧ୍ୟସ୍ଥାନରେ ଭଗ୍ନ ଡାଳପତ୍ର ଏକତ୍ର କରନ୍ତି ଏବଂ ତଦ୍ଦ୍ୱାରା ଏକପ୍ରକାର ଖଟି ନିର୍ମାଣ କରି ସେଥିରେ ଶୁଅନ୍ତି । ଓରାଂ ବଡ଼ କ୍ରୋଧୀ ଓ ଭୟଙ୍କର ଜନ୍ତୁ, କିନ୍ତୁ ଶୈଶବସମୟରୁ ପୋଷିଲେ ପୋଷମାନେ । କଲିକତାର ଜୀବଶାଳାରେ ଗୋଟିଏ ଓରାଂର ଗୋଟିଏ ବିରାଡ଼ିସଙ୍ଗରେ ବଡ଼ ବନ୍ଧୁତା ଜନ୍ମିଥିଲା । ସେ ବିରାଡ଼ିକୁ ନିଜ ଖାଇବା ଦୁଧ ଖୁଆଇ, କୋଳରେ ନେଇ ନିକଟସ୍ଥ ବୃକ୍ଷଉପରେ ଚଢ଼ି, ବିରାଡ଼ିର ଲାଙ୍ଗୁଳ ଧରି ତାହାକୁ ବୃକ୍ଷରେ ଝୁଲାଇ ଏହିପରି ନାନାପ୍ରକାରେ ତାହାସଙ୍ଗେ କ୍ରୀଡ଼ା କରୁଥାଏ । କେତେବେଳେ ଗୋଟାଏ ଦର୍ପଣ ଧରି ନାନାପ୍ରକାର ମୁଖଭଙ୍ଗୀ କରି ନିଜର ମୁଖାକୃତି ଦେଖୁଥାଏ । ଆଉ ଗୋଟାଏ ଓରାଂ ଦୁଆତ କଲମ ନେଇ କାଗଜରେ ଗାର ପକାଇ ଲେଖିବାର ଅନୁକରଣ କରୁଥିବାର ଦେଖାଯାଇଅଛି ।

## ପ୍ରଶ୍ନ

୧ । ସ୍ତନନ୍ୟପ୍ରାୟ, ଚତୁଷ୍କର, କଳ୍ପିତ, ଅନୁକରଣ, ବୃଦ୍ଧାଙ୍ଗୁଷ୍ଠ, ଏ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ଓ ଅର୍ଥ ବୋଲ ।

୨ । ଅଳୀକ, ଆପ୍ଲୁତ, ଚଷକ, ଆକୃତିଗତ ସାଦୃଶ୍ୟ, ଏମାନଙ୍କର ଅର୍ଥ କୋଲ ।

୩ । କେଉଁ ବାନରମାନଙ୍କୁ ପ୍ରାଚୀନମହାଦେଶୀୟ ବୋଲାଯାଏ ?

୪ । ଧରାଇବା, କୁଆଇଁବା, ଲୁଚାଇବା, ଏଗୁଡ଼ିକ କପ୍ରକାର କ୍ରିୟା ?

# ବାନର

## ୨ୟ ପାଠ

ଭାରତବର୍ଷର ପ୍ରାୟ ସର୍ବଅଞ୍ଚଳରେ ହନୁମାନ୍‌ଜାତୀୟ ବାନରମାନେ ବାସ କରନ୍ତି । ମୁଣ୍ଡରୁ ଲାଙ୍ଗୁଳର ମୂଳ ପର୍ଯ୍ୟନ୍ତ ଦେହଟା ପ୍ରାୟ ଦୁଇଫୁଟ ବା ଅଢ଼ାଇ ଫୁଟ ହେବ । ଏପରି ବଡ଼ ହନୁମାନ୍ ମଧ୍ୟ ଅଛନ୍ତି, ଯେଉଁମାନଙ୍କର ଦେହ ୩ ଫୁଟ ଦୀର୍ଘ ହେବ । ସ୍ତ୍ରୀ-ହନୁମାନ୍ ପୁରୁଷ-ହନୁମାନ୍ ଅପେକ୍ଷା କିଛି କ୍ଷୁଦ୍ରତର । ହନୁମାନ୍ ବା ହନୁମାନଙ୍କର ଲାଙ୍ଗୁଳ ଦୁଇ ବା ଅଢ଼ାଇ ହାତ ଲମ୍ବା ହୋଇଥାଏ । ଏମାନଙ୍କ ଗାଲରେ ଥଳୀ ନାହିଁ । କିନ୍ତୁ କଣ୍ଠଦେଶରେ ଦୁଇଟା କଡ଼ା ଥାଏ । କୌଣସି କୌଣସି ବାନରମାନେ କୀଟପତଙ୍ଗ ଖାଇଥାନ୍ତି, କିନ୍ତୁ ହନୁମାନେ ଆମିଷ ସ୍ପର୍ଶ କରନ୍ତି ନାହିଁ । ଏମାନଙ୍କର କର୍ଣ୍ଣ, ମୁଖ, କରତଳ ଓ ପଦତଳ କଳା ଓ ସମସ୍ତ ଶରୀରର ରଙ୍ଗ ଧୂସର । ହନୁମାନେ ସ୍ତ୍ରୀ-ପୁରୁଷ ଓ ଶିଶୁ ଏକତ୍ର ଦଳବଦ୍ଧ ହୋଇ ବାସ କରନ୍ତି । ଭୟ ପାଇଲେ ପିଲାଗୁଡ଼ିକ ମାତାର ଦେହର ଚର୍ମକୁ ମୁଠାକରି ଦୃଢ଼ରୂପେ ଧରନ୍ତି ଓ ମା ପିଲାସହିତ ବୃକ୍ଷରୁ ବୃକ୍ଷକୁ ଡେଇଁ ଚାଲିଯାଏ । ସାଧାରଣତଃ ଏକ ଏକ ଦଳରେ ଗୋଟାଏ ବଡ଼ ପୁରୁଷ-ହନୁମାନ୍ ଦଳପତି ବା ମହନ୍ତରୂପେ ଥାଏ ଏବଂ ସମସ୍ତେ ତାହାର ଆଦେଶ ଅନୁସାରେ ଚଳନ୍ତି । କେତେକେତେବେଳେ ଅନ୍ୟ ବିକ୍ରମଶାଳୀ ପୁରୁଷ-ହନୁମାନ୍ ଆସି କୌଣସି ଦଳର ମହନ୍ତଙ୍କୁ ମାରି ତଡ଼ିଦିଏ ଓ ନିଜେ ମହନ୍ତ ହୋଇ ବସେ । କେତେକେତେବେଳେ ଦଳମଧ୍ୟରେ ପୁରୁଷ ହନୁ ଜନ୍ମିଲେ ଦଳପତି ତାହାକୁ

ମାରପକାଏ । ମା ପିଲାକୁ ରକ୍ଷା କରିବା ପାଇଁ ଅନେକ ଚେଷ୍ଟା କରେ । କେତେକେତେବେଳେ ଦୁଇଦଳ ହନୁଙ୍କର ପରସ୍ପର ଯୁଦ୍ଧ କରିବାର ଦେଖାଯାଏ । ହନୁମାନେ ନଦୀ ବା ପୁଷ୍କରିଣୀର ତଟରେ ଉଚ୍ଚ ବୃକ୍ଷଉପରେ ଏବଂ ପର୍ବତ ଓ ଅରଣ୍ୟରେ ବାସ କରନ୍ତି । ଲୋକାଳୟରେ ଏମାନେ ଘରର ପଟଳ ଅର୍ଥାତ୍ ଛାତ କିମ୍ବା ଚାଳ ଉପରେ ବସନ୍ତି ଏବଂ ଗୃହସ୍ଥର ଘରୁ ଖାଦ୍ୟଦ୍ରବ୍ୟ ନେଇ ପଳାୟନ କରନ୍ତି । କ୍ଷେତ୍ରର ଶସ୍ୟ ଓ ଉଦ୍ୟାନର ଫଳକୁ ଏମାନଙ୍କର ଉତ୍ପାତରୁ ରକ୍ଷା କରିବା କଠିନ ହୁଏ । ମଥୁରା, ପୁରୀ ପ୍ରଭୃତି ତୀର୍ଥସ୍ଥାନମାନଙ୍କରେ ବହୁ ହନୁମାନ୍‌ଦଳ ଦେଖାଯାଏ । ହିନ୍ଦୁମାନେ ସେମାନଙ୍କୁ ରାମାୟଣବର୍ଣ୍ଣିତ ମହାବୀର ହନୁମାନ୍‌ର ବଂଶଧର ବୋଲି ବିଶ୍ୱାସ କରି ହନୁବଧ କରନ୍ତି ନାହିଁ । ହନୁମାନେ ବୃକ୍ଷରୁ ବୃକ୍ଷାନ୍ତରକୁ ଡେଇଁଲାବେଳେ ଏକପ୍ରକାର ହୁଙ୍କାରଶବ୍ଦ କରନ୍ତି । ସେମାନେ ବାଘକୁ ଘୋର ଶତ୍ରୁ ଜାଣି ବାଘ ଯେଉଁ ବୁଦାରେ ଲୁଚିଥାଏ ତାହାକୁ ଦେଖି ଏକପ୍ରକାର ଶବ୍ଦ କରି ଶିକାରୀ ମନୁଷ୍ୟମାନଙ୍କୁ ବାଘର ସନ୍ଧାନ ବତାଇଦିଅନ୍ତି । ହନୁ ଜଳରେ ସନ୍ତରଣ କରିପାରେ ନାହିଁ । ସାନବଡ଼ ଅନେକପ୍ରକାର ହନୁ ଅଛନ୍ତି ।

କପି ବା ମର୍କଟଜାତୀୟ ବାନରମାନଙ୍କର ଗଣ୍ଡଦେଶରେ ଥଳୀ ଥାଏ । ଏମାନଙ୍କର ଲାଙ୍ଗୁଳ କ୍ଷୁଦ୍ର । ଏମାନେ ନୃଶଂସ-ସ୍ୱଭାବ ଓ ଅତ୍ୟନ୍ତ ଅପକାରୀ । ଏମାନେ ଚର୍ବଣ କରିବାର ଅବସର ନ ପାଇଲେ, ଖାଦ୍ୟଦ୍ରବ୍ୟକୁ ଗଣ୍ଡଦେଶର ଦୁଇପାର୍ଶ୍ୱର ଥଳୀରେ ଶୀଘ୍ର ଶୀଘ୍ର ପୂରାଇ ରଖି, ଅବସରସମୟରେ ତାହାକୁ ଚୋବାଇ ଉଦରସାତ୍ କରନ୍ତି । ଆଶିଆ[redacted] ମର୍କଟମାନେ ଦେଖିବାକୁ ଭେଡ଼ା ଓ ମୋଟା । ଏମାନେ ଦଳବଦ୍ଧ ହୋଇ ବାସ କରନ୍ତି । ବଡ଼ ନ ହେବାଯାଏ ପିଲାମାନେ ମାତାର ବକ୍ଷରେ ଥାନ୍ତି । ମାତା ପିଲାକୁ ଚାପୁଡ଼ା ଓ ମୁଥ ମାରି ଏବଂ ନାନାପ୍ରକାରେ ବିରକ୍ତି ପ୍ରକାଶ କରି ପିଲାକୁ ଶାସନ କରେ । ମାଡ଼ ଖାଇଲେ ମର୍କଟଶାବକ ଆଗେ ମନୁଷ୍ୟଶିଶୁପରି ଚିତ୍କାରକରି କାନ୍ଦେ, ପରେ ମାତାର ସ୍ତନ୍ୟ ପାନକରି ସବୁ ଦୁଃଖ ପାସୋରିପକାଏ । ଆମ୍ଭମାନଙ୍କ ଦେଶରେ ୮ । ୯ ପ୍ରକାରର ମର୍କଟ ଅଛନ୍ତି । ଅନେକ ଲୋକ ମର୍କଟଶାବକ

ପୋଷି ତାହାଙ୍କୁ ନାନା କୌତୁକକର କ୍ରୀଡ଼ା ଶିଖାଇ ତାହା ଲୋକମାନଙ୍କୁ ଦେଖାଇ ଅର୍ଥ ଉପାର୍ଜ୍ଜନ କରନ୍ତି । ଏମାନଙ୍କର ମୁଖ ଓ ନିତମ୍ବ ଈଷଦ୍ଲୋହିତ । ଏମାନଙ୍କର ଦଳପତିର ନିତମ୍ବର ରଙ୍ଗ ଉଜ୍ଜ୍ୱଳ ରକ୍ତ-ବର୍ଣ୍ଣ । ମର୍କଟମାନେ ବୁଦ୍ଧି-ମାନ୍ ଓ ଅନୁକରଣ-ପଟୁ । ଏମାନେ ଫଳୋଦ୍ୟାନ ଓ ଇକ୍ଷୁକ୍ଷେତ୍ରରେ ସର୍ବନାଶ କରନ୍ତି ଏବଂ କୀଟପତଙ୍ଗ ମଧ୍ୟ ଭକ୍ଷଣ କରନ୍ତି । ଏମାନେ ପରସ୍ପରର ଗାତ୍ରର ଉକୁଣି ବାହାରକରି ଖାନ୍ତି । ଆମ୍ଭମାନଙ୍କ ଦେଶର କେହି କେହି ଧର୍ମ୍ମ ହିନ୍ଦୁ ଫଳପୂର୍ଣ୍ଣ ଉଦ୍ୟାନ ମାଙ୍କଡ଼ମାନଙ୍କ ନିମିତ୍ତ ଛାଡ଼ିଦେଇଥାନ୍ତି ଓ ସମୟେ ସମୟେ ପ୍ରଚୁର ପରିମାଣରେ ମୁଢ଼ି, ଖଇ ପ୍ରଭୃତି ଖାଦ୍ୟସାମଗ୍ରୀ ସେମାନଙ୍କଲାଗି ପଠାଇ-ଦିଅନ୍ତି । ମର୍କଟମାନେ କେତେକେତେବେଳେ ପରସ୍ପରସହିତ ସଦ୍ଭାବରେ ଥାନ୍ତି ପୁଣି କେତେକେତେବେଳେ ପରସ୍ପରକୁ କାମୁଡ଼ି କ୍ଷତବିକ୍ଷତ କରି ମାରି-ପକାଇବାର ଚେଷ୍ଟା କରନ୍ତି । ମର୍କଟମାନେ ଜଳରେ ସ୍ନାନ ଓ ସନ୍ତରଣ କରନ୍ତି । ପୁରୀ ପ୍ରଭୃତି ତୀର୍ଥସ୍ଥାନମାନଙ୍କରେ ମର୍କଟମାନଙ୍କର ଉତ୍ପାତ ଅତି ଭୟଙ୍କର । ଏମାନେ ମନୁଷ୍ୟକୁ କିଛିମାତ୍ର ଭୟ କରନ୍ତି ନାହିଁ, ମନୁଷ୍ୟର ଘରଭିତରୁ ଓ ତାହାର ହାତରୁ ଡାଲ, ଟଙ୍କିଆ, ବସ୍ତ୍ର ନେଇଯାଇ ବୃକ୍ଷଉପରେ ବା ଘରର ଛାତଉପରେ ବସନ୍ତି । କିଛି ଖାଦ୍ୟସାମଗ୍ରୀ ନ ଦେଲେ ବାସନ ବା ବସ୍ତ୍ରାଦି ଫେରାଇ ଦିଅନ୍ତି ନାହିଁ । ଆଫ୍ରିକା ମହାଦେଶରେ ଅନେକପ୍ରକାର ମର୍କଟ ଅଛନ୍ତି ।

ନୂତନ ମହାଦ୍ୱୀପଦେଶୀୟ ବା ଆମେରିକା ବାନରମାନଙ୍କର ଗଣ୍ଡଦେଶରେ ଆହାରଦ୍ରବ୍ୟ ରକ୍ଷଣୋପଯୋଗୀ ଥଳୀ ନାହିଁ ଏବଂ ନିତମ୍ବର ଅଧୋଭାଗରେ କଡ଼ା ନାହିଁ । ଏମାନେ ଆକାରରେ ପ୍ରାଚୀନମହାଦେଶୀୟ ବାନରମାନଙ୍କ ଅପେକ୍ଷା କ୍ଷୁଦ୍ର । ଏମାନଙ୍କର ନାସାରନ୍ଧ୍ର ଅପେକ୍ଷାକୃତ ବିସ୍ତୃତ । ଆସିଆ ଓ ଆଫ୍ରିକାର ବାନରମାନେ ଶାଖାପ୍ରଶାଖାଦିରେ ଲାଙ୍ଗୁଳ ଗୁଡ଼ାଇ ତାହାକୁ ଦୃଢ଼ରୂପେ ଧରି ପାରନ୍ତି ନାହିଁ । ଆମେରିକାର ବାନରମାନେ ଲାଙ୍ଗୁଳଦ୍ୱାରା ପଦାର୍ଥମାନ ଗୁଡ଼ାଇ ଧରନ୍ତି ଏବଂ ଲାଙ୍ଗୁଳଦ୍ୱାରା ବୃକ୍ଷଶାଖାରେ ଝୁଲି ନାନାପ୍ରକାର କ୍ରୀଡ଼ା କରନ୍ତି । ଆମେରିକାସ୍ଥ ସ୍ପାଇଡରଜାତୀୟ ବା ମାଙ୍କଡ଼ସା-ବାନରର ଅଗ୍ରପାଦରେ ଅଙ୍ଗୁଷ୍ଠ ନାହିଁ । ସେମାନଙ୍କର ଗାତ୍ର କୃଷ୍ଣବର୍ଣ୍ଣ ବା ଧୂସରବର୍ଣ୍ଣ । ମୁଖ ଆରକ୍ତବର୍ଣ୍ଣ, ଲାଙ୍ଗୁଳ

ଦୀର୍ଘ ବୃକ୍ଷରୁ ବୃକ୍ଷାନ୍ତରକୁ ଯିବାକୁ ହେଲେ ବୃକ୍ଷର ଶାଖାରେ ଲାଙ୍ଗୁଳ ଗୁଡ଼ାଇ ଅଗ୍ରପାଦଦ୍ୱାରା ଶାଖାକୁ ଧରି ଝୁଲୁଥାନ୍ତି, କିଛିକ୍ଷଣ ଏହିପରି ଝୁଲି ଗତିବେଗରେ ସେବୃକ୍ଷ ଛାଡ଼ି ବୃକ୍ଷାନ୍ତରକୁ ଡେଇଁପଡ଼ନ୍ତି ।

## ପ୍ରଶ୍ନ

୧ । ନିତମ୍ବ, ଅଧୋଭାଗ, ଗୃହପଟଳ ଏ ଶବ୍ଦମାନଙ୍କର ଅର୍ଥ ଲେଖ ।

୨ । ଆମେରିକା ବାନରମାନଙ୍କର ବିଶେଷ ଲକ୍ଷଣ ବୋଲ । ସେମାନେ କିପରି ଏକ ବୃକ୍ଷରୁ ଅନ୍ୟ ବୃକ୍ଷକୁ ଯାନ୍ତି ?

୩ । ଲୋକାଳୟରେ କପିମାନେ କିପରି ଉତ୍ପାତ କରନ୍ତି ?

୪ । ମର୍କଟ ଓ ହନୁମାନଙ୍କୁ ହିନ୍ଦୁମାନେ କାହିଁକି ବଧ କରନ୍ତି ନାହିଁ ?

## ସୀତାବନବାସ

ଅଗ୍ରଜ-ଆଜ୍ଞାବହ ସୌମିତ୍ରି ରଥୀ
ରାମ-ହୃଦୟ-ଜ୍ୟୋତିଷ୍ମ ବୈଦେହୀ ସତୀ
ବିସର୍ଜି ଭାଗୀରଥୀତୀର-କାନନେ
ଲେଉଟାଇଲେ ରଥ ଅଥୟ ମନେ ।

ଘନ ଘନ ଲୋତକଧାରା ନୟନୁ
ଝରି ତିନ୍ତିଲା ବକ୍ଷ, ତିନ୍ତିଲା ଧନୁ ।

ଘୋର ଘର୍ଘର ଘୋଷେ ପୂରି କାନନ,
ଚଳିଲା ହାହାରବେ ଯେସନେ ସ୍ୟନ୍ଦନ ।

କମ୍ପି ଉଠିଲେ ବର୍ଣ୍ଣମୂର୍ତ୍ତି ଜନନୀ ;
ରୁଷିଲେ ଗଙ୍ଗା ରଘୁକୁଳ ପାବନୀ ।

ଜୀମୂତ-ଆବରଣେ ଦେବ ଭାସ୍କର
ଲୁଚିଲେ ତମୋମୟ କଲ ଅମ୍ବର ।

ହେଲା ସେ ରଥ ଯହୁଁ ଦୃଷ୍ଟି ଅଗୋଚ,
ପଞ୍ଚପ୍ରାଣା ଜାନକୀ ହେଲେ ମୂର୍ଚ୍ଛିତ ।

ବାତାହତ କନକ ପ୍ରତିମା ପର
ପଡ଼ିଲେ ମହୀତଳେ ରଘୁ-ସୁନ୍ଦରୀ ।

ମିହିରକୁଲ ଲକ୍ଷ୍ମୀ ମୈଥିଳୀ-ଦଶା
ଦେଖିଣ ଭାଗୀରଥୀ ଦୁଃଖେ ବିବଶା,

ତ୍ୱରିତ ବଧୂମୋହବିନାଶ ଆଣେ
ଶୀକରଶୀତବାୟୁ ପେଷିଲେ ପାଶେ ।

ଚେତନା ଲଭି ଦେବୀ ବହୁତକ୍ଷଣେ,
ଏକାକିନୀ ସେ ଘୋର ବିଜନ ବନେ,

ମରମଭେଦୀ ଶୋକେ ହୋଇ ବିକଳ,
କହିଲେ ଝର୍ଝରି ବର୍ଷି ଲୋତକଜଳ ।

"ଚରଣ-ପଦ୍ମତଳୁ ଦୟାସାଗର ।
"ସତେ କି ଏ ଦାସୀକି କଲ ଅନ୍ତର ?

"କେମନ୍ତେ କହ ପ୍ରଭୁ ! ବଞ୍ଚିବ ଦିନ
"ହରାଇ ସେ ଯୁଗଳ ପଦନଳିନ ?

"କାହା ଶରଣ ଆଜି, ହେ ରଘୁରାଜ !
"ଜାନକୀ ଅଭାଗିନୀ ପଶିବ ଆଜ ?

ପୁରାଣ କବି ବୃଦ୍ଧ ମୁନିଈଶ୍ୱର
(ଗହନ ବନେ କ୍ରୂର ନିଷାଦ-ଶର

ବିଦ୍ଧ କ୍ରୌଞ୍ଚବିହଙ୍ଗ ଅବଲୋକନେ,
ଶୋକ-ଉଚ୍ଛ୍ୱାସ ଯାର ବହିଣ ଘନେ,

ଶ୍ଲୋକରୂପେ ମୋହିଲା ସର୍ବ ଅବନୀ)
ନିକଟେ ଶୁଣିଲେ ସେ କ୍ରନ୍ଦନଧ୍ୱନି ।

ମିଳିଲେ ଯାଇ ଯହିଁ ଏକା ସୁନ୍ଦରୀ
ଗଗନେ ରାହୁଗ୍ରାସେ ଶଶାଙ୍କପରି ।

ପୋଛିଣ ଅଶ୍ରୁଧାରା, ଭକତିଭରେ
ନମିଲେ ରଘୁବଧୂ ମୁନିପଦ୍ମରେ !

ଗର୍ଭ-ଲକ୍ଷଣ ଦେଖି ମୁନିପୁଙ୍ଗବ
"ବିଶାଳଯଶା ବୀର ତନୟ ଲଭ"

ଏମନ୍ତ ସୁଆଶିଷ ମୁନି ପ୍ରଦାନି
ଭାଷିଲେ ଶାନ୍ତଚିତ୍ତା ସାନ୍ତ୍ୱନା-ବାଣୀ

"ଜାଣିଲି ଧ୍ୟାନେ, ସତି ! ରାବଣଅରି
"ତେଜିଲେ ତୋତେ ମିଥ୍ୟା ପ୍ରବାଦେ ଡରି ।

"ସଖା ମୋହର, ବତ୍ସେ ! ତୋ'ର ଶ୍ୱଶୁର
"ବ୍ୟାପିଛି ଯାର ଯଶ ଏ ତିନିପୁର ।

"ଜ୍ଞାନିଜନମାନଙ୍କ ହିତକାରକ
"ମୋହମୟ-ସଂସାର-ଦୁଃଖନାଶକ

"ମିଥିଳାନାଥ ମୁକ୍ତିତତ୍ତ୍ୱଦରଶୀ
"ପିତା ତୋହର ରାଜ-ଶ୍ରେଷ୍ଠ ରାଜର୍ଷି ।

"ତୁ ପୁଣି ସତୀକୁଳଅଗ୍ରତେ ସ୍ଥିତ ।
"ତେଣୁ ତୋ ଦୁଃଖେ ମୁହିଁ ଅଛ ଦୁଃଖିତ ।

"ଘେନ ଆଶ୍ରୟ, ବତ୍ସେ ! ନିର୍ଭୟ ମନେ ।
"ହୃଦବିକାର-ନାଶୀ ଏ ତପୋବନେ ।

"ଋଷିସଙ୍ଗପ୍ରଭାବେ ଶ୍ୱାପଦେ ଯହିଁ .
"ନିରୀହ ଶାନ୍ତ ଭାବେ ଅଛନ୍ତି ରହି ।

"ଏଥି ଗୋ ରଘୁବଧୂ ! ତୋର କୁମାର
"ଲଭିବେ ବିଧିମତେ ଜାତ-ସଂସ୍କାର ।

"ମୁନିଆଶ୍ରମେ ପୂର୍ଣ୍ଣ ତମସାତୀର
"ସଂସାର-ତମୋନାଶୀ ଏ ନଦୀନୀର ।

"ଅବଗାହଣ ତହିଁ, ନିତ୍ୟ ସୈକତେ
"ସମ୍ପାଦ ବଳିକ୍ରିୟା ବିଧାନମତେ,

"ଚିନ୍ତା ଉଦ୍‌ବେଗ ମନୁଁ କର ଗୋ ଦୂର,
"ଭୁଞ୍ଜ ନିର୍ମଳ ଶାନ୍ତ ସୁଖ ପ୍ରଚୁର ।

"ନୀବାର-ବୀଜ, ଜାତ ବନାକର୍ଷଣେ
"ଯହେ ଆହୁତ ଫଳ ପୂଜାସୁମନେ;.

"ତୁଟିବ ନବ ଶୋକ, ମୁନିକୁମାରୀଗଣ
"ହରିବେ ଭାଷି ମୃଦୁ ମଧୁ ବଚନ ।

"ଆଶ୍ରମର ତରୁଣ ତରୁନିକରେ
"ଯତନେ ବଢ଼ାଇଣ ଘଟଜଳରେ,

"ନିରେଖିବା ଆଗରୁ ତନୟମୁଖ,
ଲଭିବୁ ତନୟର ପାଳନସୁଖ ।"

ଭୃଷି ଏସନ ବୃଦ୍ଧ ଯତ୍ତପ୍ରବର,
ନେଲେ ସୀତାଙ୍କୁ ତପୋବନ ଭିତର

ସାଧ୍ୱୀମାନେ ବେଢ଼ ତଉଦବେ ଶଯ୍ୟାନ
ପ୍ରେମନ୍ଦ୍ରେ ରତ ଯହିଁ କୁରଙ୍ଗମାନ ।

ବେଗେ ଆସିଣ ମୁଗ୍ଧମୁନିକୁମାରୀ,
ଅଞ୍ଚଳେ ପୋଛି ସୀତା ନୟନବାରି

ସାନ୍ତ୍ୱନା-ବାକ୍ୟେ ଉଦ୍ଭ୍ରାନ୍ତ-ହୃଦୟ
ପ୍ରବୋଧି ନେଲେ ନିଜ ନିଳୟ ।

## ପ୍ରଶ୍ନ

୧ । ରାମ-ହୃଦୟ-ଜ୍ୟୋତ୍ସ୍ନା, ଘୋର ଧର୍ମର ଘୋଷ, ଏ ଭବଜଳେ, ଧୃତ ହୋମ-ସାଧନ, ମୁକ୍ତିତତ୍ତ୍ୱଦରଶୀ, ମୁଗ୍ଧ ମୁନିକୁମାରୀ, ଏହି ବାକ୍ୟାଂଶଗୁଡ଼ିକର ଅର୍ଥ ସ୍ପଷ୍ଟରୂପେ ବୁଝାଇଦିଅ ।

୨ । ବାତାହତ, ବଣାଳଯଣା, ଖୀକରଶୀତବାୟୁ, ଶାନ୍ତଚେତା, ପଦ୍ମ-ପ୍ରାଣା, ପଦ-ରାଜୀବ, ସଂସାର-ତମୋନାଶୀ, ଏ ପଦଗୁଡ଼ିକରେ ଥିବା ସମାସମାନ ବବୃତ କର ।

୩ । "ଆହରିବା ଆଶୟେ" ଠାରୁ "ସେ କ୍ରନ୍ଦନଧ୍ୱନି" ପର୍ଯ୍ୟନ୍ତ ୭ ଧାଡ଼ିର ଗଦ୍ୟାନ୍ୱୟ କର ।

୪ । ସୀତାବନବାସର ବୃତ୍ତାନ୍ତ ଆମୂଳ ବର୍ଣ୍ଣନ କର ।

୫ । ଶଯ୍ୟାନ, ନିଳୟ, ପୁଙ୍ଗବ, ବଣ୍ୟମୃଗ, ଜାନକୀ, କାନ୍ତା, ଏହି ପଦ-ମାନଙ୍କର ବ୍ୟୁତ୍ପତ୍ତି ନିର୍ଦ୍ଦେଶ କର ।

୬ । ଏ କବିତାରେ ତପୋବନବିଷୟକ ବର୍ଣ୍ଣନାରୁ ଋଷିକୁମାରୀମାନଙ୍କ ନିତ୍ୟନୈମିତ୍ତିକ କ୍ରିୟା ନିର୍ଦ୍ଦେଶ କର ।

୭ । ସୀତାଙ୍କର ବିଳାପ ଆବୃତ୍ତି କର ।

## ହସ୍ତୀ

ଯେଉଁ ପଶୁମାନଙ୍କର ଚର୍ମ ସ୍ଥୂଳ, ସେମାନଙ୍କୁ ସ୍ଥୂଳତ୍ୱକ୍ ବା ସ୍ଥୂଳଚର୍ମୀ ବୋଲାଯାଏ । ବରାହ, ଗଣ୍ଡାର, ସିନ୍ଧୁଘୋଟକ ଓ ହସ୍ତୀ ସ୍ଥୂଳଚର୍ମୀ ପଶୁଶ୍ରେଣୀର ଅନ୍ତର୍ଗତ । ଏଥିମଧ୍ୟରୁ ହସ୍ତୀର ବିବରଣ ନିମ୍ନରେ ଦିଆଗଲା ।



ହସ୍ତୀ

ସ୍ଥଳଚର ଜନ୍ତୁମାନଙ୍କ ମଧ୍ୟରେ ହସ୍ତୀପରି ବୃହଦାକାର ଜନ୍ତୁ ଦେଖାଯାଏ ନାହିଁ । ଚଳନ୍ତା ପର୍ବତାକାର ଏହି ପ୍ରକାଣ୍ଡକଳେବର ଜୀବର କର ବା ଶୁଣ୍ଢ ଥିବାରୁ ଏହାକୁ କରୀ ବୋଲାଯାଏ । ଏହାର ଶରୀର ପ୍ରାୟ ଦଶହାତ ଦୀର୍ଘ

ଓ ପ୍ରାୟ ଆଠହାତ ଉଚ୍ଚ ଥିବାର ଦେଖାଯାଏ । ଏହାର ଗୃଉପାଦ ଗୃଉ-ଗୋଟି ସ୍ତମ୍ଭତୁଲ୍ୟ । ପ୍ରତ୍ୟେକ ପାଦରେ ପାଞ୍ଚଗୋଟି ଗୋଲାକାର ଖୁରା ଅଛି । ଚକ୍ଷୁଦୁଇଟି କ୍ଷୁଦ୍ର କିନ୍ତୁ ଉଜ୍ଜ୍ୱଳ, କାନଦୁଇଟି କୁଲାପରି ବୃହତ ଓ ଝୁଲା, ଚର୍ମ ବନ୍ଧୁର ଓ ଗାତ୍ରର ବର୍ଣ୍ଣ ଧୂମ୍ର ବା ଧୂସର । ଏହାର ଓଷ୍ଠପ୍ରାନ୍ତରୁ ଦୁଇଟି ବୃହତ ଦନ୍ତ ବହିର୍ଗତ । ଏହାର ମସ୍ତକ ବୃହତ ଓ ଗ୍ରୀବା ଖର୍ବ । ଏହାର ଶୁଣ୍ଡ ହସ୍ତ ଓ ନାସିକାର କାର୍ଯ୍ୟ ସମ୍ପନ୍ନ କରେ । ହସ୍ତୀ ଶୁଣ୍ଡଦ୍ୱାରା ସୂକ୍ଷ୍ମ ଦୋଅଣି ପରି କ୍ଷୁଦ୍ର ପଦାର୍ଥମାନ ତଳରୁ ଉଠାଇନିଏ ଓ ବୃକ୍ଷର ବଡ଼ ବଡ଼ ଡାଳ ଭାଙ୍ଗି-ପକାଏ । ଶୁଣ୍ଡମଧ୍ୟରେ ଦୁଇଟି ଛିଦ୍ର ଅଛି । ତଦ୍ୱାରା ସେ ନିଃଶ୍ୱାସ ଗ୍ରହଣ କରେ ଏବଂ ଜଳ ଶୋଷିନେଇ ମୁଖମଧ୍ୟରେ ତାହା ପାନ କରେ, କେତେ-ବେଳେ ଅବା ଫୁତ୍କାରଦ୍ୱାରା ଜଳ ନିକ୍ଷେପ କରି ଖେଳା କରେ । ହସ୍ତୀର ଦନ୍ତ ପ୍ରାୟ ୭ ହାତ ପର୍ଯ୍ୟନ୍ତ ଲମ୍ବା ଥିବାର ଦେଖାଯାଇଅଛି । ହସ୍ତୀ ସେହି ଦନ୍ତ-ଦ୍ୱାରା ସିଂହ ବ୍ୟାଘ୍ର ପ୍ରଭୃତି ପ୍ରବଳ ଶତ୍ରୁମାନଙ୍କୁ ବିଦୀର୍ଣ୍ଣ କରିପକାଏ । ହସ୍ତୀଦନ୍ତ ଶୁଭ୍ର ଓ ଚିକ୍କଣ ଏବଂ ତାହା ବହୁମୂଲ୍ୟରେ ବିକ୍ରୀତ ହୁଏ । ଲୋକେ ତଦ୍ୱାରା ପଲଙ୍କ, ପଙ୍ଖା, ପଶାକାଠି, ପାନିଆ, ପେଡ଼ି, ଫରୁଆ ପ୍ରଭୃତି ନାନାବିଧ ସାମଗ୍ରୀ ନିର୍ମାଣ କରନ୍ତି । ହସ୍ତୀର ଲାଙ୍ଗୁଳ ଖଣ୍ଡେ କ୍ଷୁଦ୍ର ରଜ୍ଜୁବତ୍ ।

ହସ୍ତୀ ଆସିଆ ଓ ଆଫ୍ରିକାର ନିବାସୀ ଅଟନ୍ତି । ଆସିଆର ହସ୍ତୀମାନଙ୍କ ମଧ୍ୟରେ ବ୍ରହ୍ମଦେଶରେ ଏକପ୍ରକାର ଶ୍ୱେତବର୍ଣ୍ଣ ହସ୍ତୀ ଦେଖାଯାଏ । ଓଡ଼ିଶାର ପଶ୍ଚିମ ଭାଗର ଅରଣ୍ୟ ଓ ପର୍ବତମାନଙ୍କରେ ବହୁ ବନହସ୍ତୀ ଅଛନ୍ତି । ଏମାନେ ଦଳବଦ୍ଧ ହୋଇଥାନ୍ତି । ହସ୍ତୀ ଧରିବା ପାଇଁ ଲୋକେ ନାନାପ୍ରକାର କୌଶଳ ପ୍ରୟୋଗ କରନ୍ତି । ଭାରତବର୍ଷରେ ହସ୍ତୀ ଧରିବା ପାଇଁ ଲୋକେ ବଡ଼ କାଠଗଡ଼ ବା କାଷ୍ଠର ପ୍ରାଚୀର ନିର୍ମାଣ କରି ସେଥିମଧ୍ୟରେ ବାଟ ରଖି ଗୋଟାଏ ପୋଷା ହସ୍ତିନୀ ଛାଡ଼ିଦିଅନ୍ତି । ହସ୍ତୀମାନେ ହସ୍ତିନୀଦ୍ୱାରା ଆକୃଷ୍ଟ ହୋଇ ସେଥି-ମଧ୍ୟରେ ପ୍ରବେଶ କଲାରୁ ଲୋକେ ପ୍ରଚ୍ଛନ୍ନ ଥାଇ ବାହାରିବାର ପଥ ବନ୍ଦ କରିଦିଅନ୍ତି ଏବଂ କ୍ରମେ କ୍ରମେ ନିକଟବର୍ତ୍ତୀ ହୋଇ ଦୃଢ଼ ରଜ୍ଜୁଦ୍ୱାରା ସେମାନଙ୍କ ପାଦରେ ଫାଶ ପକାଇ ବଡ଼ ବଡ଼ ବୃକ୍ଷର କାଣ୍ଡରେ ବାନ୍ଧି ରଖନ୍ତି । ପରେ

କ୍ରମେ ଅନାହାରରେ କ୍ଷୀଣ ହେଲେ କିଛି କିଛି ଆହାର କରିବାକୁ ଦିଅନ୍ତି । ଲୋକେ ଏହିପରି କିଛିଦିନମଧ୍ୟରେ ସେମାନଙ୍କୁ ପୋଷମନାଇ ବଶୀଭୂତ କରନ୍ତି । ଆରଣ୍ୟ ହସ୍ତୀମାନେ ଅତ୍ୟନ୍ତ ଭୀଷଣପ୍ରକୃତି, କିନ୍ତୁ ପୋଷା ହେଲେ ସେମାନଙ୍କ ପ୍ରକୃତି ବଦଳିଯାଏ । ସେମାନେ ଧୀର ଓ ବାଧ୍ୟ ହୁଅନ୍ତି । ପୋଷା ହସ୍ତୀର ବୁଦ୍ଧି, ଚତୁରତା, ପ୍ରଭୁଭକ୍ତି ଓ ପ୍ରତିହିଂସା ସୁପ୍ରସିଦ୍ଧ ।

ଛଅଗୋଟା ଘୋଡ଼ା ଯେଉଁ ବୋଝକୁ ହଲାଇ ପାରିବେ ନାହିଁ, ହସ୍ତୀ ଏକାକୀ ତାହା ଅବଲୀଳାକ୍ରମେ ବୋହି ନେଇଯାଏ । ପ୍ରତିଦିନ ଦୁଇମହଣ ଘାସ ଖାଇଲେ ତାହାର ଉଦର ପୂର୍ଣ୍ଣ ହୁଏ । ହସ୍ତୀମାନେ ଯୂଥବଦ୍ଧ ହୋଇ ଶସ୍ୟକ୍ଷେତ୍ରରେ ଚରି ଶସ୍ୟ ନଷ୍ଟ କରନ୍ତି । ସେମାନେ ସନ୍ତରଣ-ପଟୁ । ସମସ୍ତ ଦେହ ଜଳରେ ବୁଡ଼ାଇ ଶୁଣ୍ଢର ଅଗ୍ରଭାଗ ଉପରକୁ ରଖି ପହଁରନ୍ତି । ନଦୀ ପାରହେବାବେଳେ ଯୂଥପତି ଆଗରେ ଥାଏ, ତାହାର ପଛେ ପଛେ ଅନ୍ୟ ହସ୍ତୀମାନେ, ଗୋଟିକ ପଛେ ଗୋଟିଏ, ପାରହୋଇଯାନ୍ତି ।

ହସ୍ତୀ ପ୍ରାୟ ଦୁଇବର୍ଷ ଗର୍ଭଧାରଣ କରି ଗୋଟିଏମାତ୍ର ସନ୍ତାନ ପ୍ରସବ କରେ । ହସ୍ତୀର ଶାବକକୁ କରଭ ବୋଲାଯାଏ । ହସ୍ତୀମାନେ ଦୀର୍ଘଜୀବୀ । ସେମାନେ ଦେଢ଼ଶହ ବା ଦୁଇଶହ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିବାର ଦେଖା-ଯାଇଅଛି ।

ହସ୍ତୀସମ୍ବନ୍ଧରେ ନାନାପ୍ରକାର ବିସ୍ମୟଜନକ ଓ କୌତୁକାବହ ଗଳ୍ପ ଅଛି ।

କୌଣସି ରାଜା ବନ୍ଦନକଠସ୍ଥ ଏକ ନିର୍ଜ୍ଜନ ସ୍ଥାନରେ ଗୋଟିଏ ବଡ଼ ଧାନ୍ୟାଗାର ବା ଖମାର ନିର୍ମାଣ କରି ସେଥିରେ ପ୍ରଚୁର ଧାନ ରଖିଥିଲେ । ଦିନେ ଗୋଟାଏ ବଡ଼ ଦନ୍ତାବଳ ସେଠାକୁ ଆସି ସେଥିରେ ଧାନ ଥିବାର ବୁଝି-ପାରି ଅରଣ୍ୟମଧ୍ୟକୁ ଲେଉଟି ଚାଲିଯାଇ ସମୁଦାୟ ଯୂଥକୁ ଘେନି ପୁଣି ସେଠାରେ ଉପସ୍ଥିତ ହେଲା । ତାହା ଦେଖି ଖମାରର ରକ୍ଷକ ଦୁଇଜଣ ଭୟରେ ପଳାଇ ଗୋଟାଏ ଉଚ୍ଚ ବୃକ୍ଷ ଆରୋହଣ କଲେ । ହସ୍ତୀମାନେ ଖମାରର ଚାରିଆଡ଼େ ବୁଲି ଦେଖିଲେ ଯେ କୌଣସି ପାର୍ଶ୍ୱରେ ପ୍ରବେଶପଥ ନାହିଁ, କାରଣ ଏକମାତ୍ର ପ୍ରବେଶପଥ ଉପରର ଛାତରେ ଥିଲା । ତେଣୁ ଗୋଟାଏ

ବଡ଼ ହାଡ ଦାନ୍ତଦ୍ୱାରା ଖମାରର ଏକ କୋଣ ଆକ୍ରମଣ କରନ୍ତେ ଅନ୍ୟ ହସ୍ତୀମାନେ ସେହି କୋଣ ଉପରେ ଆଘାତ କରିବାକୁ ଲାଗିଲେ । ଏକଦଳ ଏହିପରି ଆକ୍ରମଣ କରି ଶାନ୍ତ ହେଲାରୁ ଆଉ ଏକଦଳ ସେମାନଙ୍କ ସ୍ଥାନ ଅଧିକାର କଲେ । ଏହିପରି ଅବଶ୍ରାନ୍ତ ପ୍ରହାରଦ୍ୱାରା ପ୍ରାଚୀରର ସେହି ଅଂଶ ଭାଙ୍ଗିପକାଇ ସମୁଦାୟ ଯୂଥ ଖମାରରେ ପଶି ଉଦର ପରିପୂର୍ଣ୍ଣ କରି ଖାଇଲେ ।

ସମୟେ ସମୟେ ଦେଖାଯାଇଅଛି ଯେ ହସ୍ତୀକିମାରେ ମାହୁନ୍ତ ନିଜର ଶିଶୁପୁତ୍ରକୁ ରଖିଦେଇ ଚାଲିଯାଏ ଏବଂ ହସ୍ତୀ ବହୁ ଯତ୍ନପୂର୍ବକ ଶିଶୁର ଦୋଳାକୁ ଝୁଲାଇ ଝୁଲାଇ ପିଲାକୁ ଶୁଆଇପକାଏ ।

କୌଣସି ସମୟରେ ଜଣେ ଲୋକ ହସ୍ତୀର ସ୍ମରଣଶକ୍ତି ବଢ଼ିବା ପାଇଁ ଗୋଟାଏ ରୋଟି ଭିତରେ ଅନେକଗୁଡ଼ାଏ ଲଙ୍କାମରିଚର ଚୂର୍ଣ୍ଣ ପୂରାଇ ସେହି ରୋଟି ହସ୍ତୀକୁ ଖାଇବାକୁ ଦେଇଥିଲା । ଛଅ ସପ୍ତାହପରେ ସେହି ଲୋକ ହସ୍ତୀ ନିକଟକୁ ଆସି ଆଉଁସିଦେଲା ଓ ତାହାସଙ୍ଗେ ଖେଳିବାକୁ ଲାଗିଲା । ଲୋକଟି ମନେକଲା ଯେ ରୋଟିକଥା ହାତୀର ମନେ ନାହିଁ, କିନ୍ତୁ ସହସା ହସ୍ତୀ ତାହାକୁ ଶୁଣ୍ଡଦ୍ୱାରା ଉତ୍ତୋଳିତ କରି ନିକଟସ୍ଥ ପଙ୍କମୟ ପୁଷ୍କରିଣୀରେ ଫିଙ୍ଗିଦେଲା ।

## ପ୍ରଶ୍ନ

୧ । ଚଳଣ୍ଟ, ପୂର୍ଣ୍ଣ, ପ୍ରୟୋଗ, ବିଦୀର୍ଣ୍ଣ, ଫୁତ୍କାର, ଏହି ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ଦେଖାଅ ।

୨ । ହସ୍ତୀର ବୁଦ୍ଧି ଓ ବଳ ବିଷୟକ ଗୋଟିଏ ଗଳ୍ପ ଲେଖ ।

୩ । ହସ୍ତୀର ଶରୀରର ବର୍ଣ୍ଣନା ଲେଖ ।

୪ । ହସ୍ତୀ ଧରିବାର କୌଶଳ ବର୍ଣ୍ଣନା କର ।

# କୃଷ୍ଣମୋହନ ବନ୍ଦୋପାଧ୍ୟାୟ

ଖ୍ରୀଷ୍ଟୀୟ ଊନବିଂଶତତମ ଶତାବ୍ଦୀର ପ୍ରଥମ ପାଦରେ ଭାରତବର୍ଷରେ ଇଂରେଜରାଜ୍ୟ ସୁପ୍ରତିଷ୍ଠିତ ହେଲାଉତ୍ତାରେ ଇଂରାଜୀଶିକ୍ଷାର ବିସ୍ତାରପ୍ରତି ପ୍ରଧାନ ରାଜପୁରୁଷଙ୍କର ଦୃଷ୍ଟି ଆକୃଷ୍ଟ ହେଲା । ନବ-ପ୍ରବର୍ତ୍ତିତ ଇଂରାଜୀଶିକ୍ଷାର ପ୍ରଭାବରେ ବଙ୍ଗଦେଶରେ ନବଯୁଗ ଉପସ୍ଥିତ ହେଲା ଏବଂ କଲିକତା ନଗରୀରେ ନବ-ପ୍ରତିଷ୍ଠିତ ହିନ୍ଦୁକଲେଜ ନାମକ ବିଦ୍ୟାଳୟର ସୁଶିକ୍ଷିତ ଯୁବକ ଛାତ୍ରମାନଙ୍କର ମନରେ ସ୍ୱାଧୀନଚିନ୍ତାର ନବୀନ ଭାବ ଜାଗରିତ ହେଲା । ସେମାନଙ୍କ ମଧ୍ୟରୁ ଅନେକେ ସ୍ୱଦେଶର ପ୍ରାଚୀନ ରୀତିନୀତି ଆଲୋଚନା କରି ନାନାବିଧ କୁସଂସ୍କାରର ବିରୁଦ୍ଧରେ ଦଣ୍ଡାୟମାନ ହେଲେ । ସେହି ଯୁବକମାନଙ୍କ ମଧ୍ୟରେ କୃଷ୍ଣମୋହନ ବନ୍ଦୋପାଧ୍ୟାୟ ଅଗ୍ରଗଣ୍ୟ ଥିଲେ ।

କୃଷ୍ଣମୋହନ ୧୮୧୩ ଖ୍ରୀଷ୍ଟାବ୍ଦରେ କଲିକତା ନଗରୀରେ ମାତାମହଙ୍କ ଗୃହରେ ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତା ଜୀବନକୃଷ୍ଣ ଦରିଦ୍ର ଥିବାରୁ ବହୁକ୍ଲେଶରେ କୁଟୁମ୍ବ ପ୍ରତିପାଳନ କରୁଥିଲେ ଏବଂ ସେହି ହେତୁରୁ ତାହାଙ୍କର ପତିପରାୟଣା ଧର୍ମଶୀଳା ଜନନୀ ଗୃହକାର୍ଯ୍ୟ ସାରି ଅବସର ସମୟରେ ସୂତାକାଟି ଓ ଉପବୀତସୂତ୍ର ପ୍ରସ୍ତୁତ କରି ଯାହା ଅର୍ଜନ କରୁଥିଲେ ତଦ୍ୱାରା ପରିବାର-ପ୍ରତିପୋଷଣରେ ସାହାଯ୍ୟ ହେଉଥିଲା । କୃଷ୍ଣମୋହନ ପ୍ରଥମେ ଗୋଟିଏ କ୍ଷୁଦ୍ର ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ଭାରତହିତୈଷୀ ମହାତ୍ମା ହେୟାର୍ ନାମକ ବିଖ୍ୟାତ ଇଂରାଜ ତାହାଙ୍କର ବୁଦ୍ଧିମତ୍ତାର ପରିଚୟ ପାଇ, ବର୍ତ୍ତମାନ ସମୟରେ ତାଙ୍କ ନାମାନୁସାରେ ହେୟାର୍ ସ୍କୁଲ୍ ନାମରେ ପ୍ରସିଦ୍ଧ ବିଦ୍ୟାଳୟକୁ ଏବଂ ୧୮୨୪ ଖ୍ରୀଷ୍ଟାବ୍ଦରେ ହିନ୍ଦୁକଲେଜକୁ ନେଇଗଲେ ।

ବିଦ୍ୟାଶିକ୍ଷାବିଷୟରେ କୃଷ୍ଣମୋହନଙ୍କର ମନୋଯୋଗ ଓ ଅଧ୍ୟବସାୟ ଅସାଧାରଣ ଥିଲା । ଦାରିଦ୍ର୍ୟବଶତଃ ତାହାଙ୍କୁ କୌଣସି କୌଣସି ଦିନ ଉପବାସରେ ରହିବାକୁ ପଡୁଥିଲେହେଁ ସେ କଦାପି ଅଧ୍ୟୟନବିଷୟରେ

ଅମନୋଯୋଗୀ ହେଉ ନ ଥିଲେ । ଜନନୀଙ୍କ ସଙ୍ଗେ ତାଙ୍କର ଏହି ନିୟମ ଥିଲା ଯେ ସେ ଓଳିଏ ରନ୍ଧନ କରିବେ, ଯେଉଁ ସମୟରେ ମା ନିଜ ପରିଶ୍ରମଦ୍ୱାରା କିଛି ଧନୋପାର୍ଜନ କରିବାର ଚେଷ୍ଟା କରିବେ । ସେହିନିୟମଅନୁସାରେ ବିଦ୍ୟାଳୟରୁ ଆସି କୃଷ୍ଣମୋହନ ରନ୍ଧନକାର୍ଯ୍ୟରେ ନିଯୁକ୍ତ ହେଉଥିଲେ, ଅଥଚ ବିଦ୍ୟାଳୟରେ କେହି ତାହାଙ୍କୁ ଶିକ୍ଷାବିଷୟରେ ପରାସ୍ତ କରିପାରୁ ନ ଥିଲେ ।

୧୮୨୯ ଖ୍ରୀଷ୍ଟାବ୍ଦରେ ପୂର୍ବୋକ୍ତ ହେଆର୍ ସାହେବ ମହୋଦୟ ତାହାଙ୍କୁ ନିଜ ସ୍କୁଲର ଦ୍ୱିତୀୟଶିକ୍ଷକପଦରେ ନିଯୁକ୍ତ କଲେ । ଏଥିଉତ୍ତାରୁ ସେ କଲିକତାର ଇଂରାଜୀଶିକ୍ଷିତ ଯୁବକମାନଙ୍କର ନେତା ହୋଇ ଗୋଟିଏ ଆଲୋଚନାସଭା ସ୍ଥାପନ କରାଇଲେ ଏବଂ ଖଣ୍ଡେ ଇଂରାଜୀ ସଂବାଦ ପତ୍ରିକା ପ୍ରକାଶ କଲେ । ଉକ୍ତ ସଭାରେ ନୈତିକ ଓ ସାମାଜିକ ବିଷୟମାନ ସ୍ୱାଧୀନଭାବରେ ଆଲୋଚିତ ଏବଂ ଉକ୍ତ ପତ୍ରିକାରେ ପ୍ରାଚୀନ କୁସଂସ୍କାର ବିରୁଦ୍ଧରେ ଅନେକ ତୀବ୍ର ପ୍ରବନ୍ଧ ପ୍ରକାଶିତ ହେଉଥିଲା ! ଏହି କାରଣରୁ ସେ ହିନ୍ଦୁଧର୍ମବିଦ୍ୱେଷୀ ବୋଲି ହିନ୍ଦୁ ସମାଜରେ ନିନ୍ଦିତ ହେବାକୁ ଲାଗିଲେ ଏବଂ ଅବଶେଷରେ ଗୃହରୁ ତାଡ଼ିତ ହେଲେ । ୧୮୩୦ ସାଲରେ ଆଲେକ୍‌ଜାଣ୍ଡର୍ ଡଫ୍ ନାମରେ ଜଣେ ପ୍ରସିଦ୍ଧ ଖ୍ରୀଷ୍ଟୀୟ ଧର୍ମପ୍ରଚାରକ କଲିକତାକୁ ଆସି ତାହାଙ୍କର ଅସାଧାରଣ ବାଗ୍ମିତାଦ୍ୱାରା ଶିକ୍ଷିତ ଯୁବକମାନଙ୍କୁ ଉତ୍ତେଜିତ କରିବାକୁ ଲାଗିଲେ ଏବଂ ସେମାନଙ୍କ ମଧ୍ୟରୁ କେତେକଜଣ ଖ୍ରୀଷ୍ଟୀୟଧର୍ମରେ ଦୀକ୍ଷିତ ହେଲେ । କୃଷ୍ଣ-ମୋହନଙ୍କର ଖ୍ରୀଷ୍ଟୀୟ ଧର୍ମଗ୍ରହଣ ଏହି ସମୟରେ ଘଟିଥିଲା ।

ଏଥିଉତ୍ତାରେ କୃଷ୍ଣମୋହନ ଅବିଶ୍ରାନ୍ତ ଚେଷ୍ଟାଦ୍ୱାରା ଆତ୍ମୋନ୍ନତ କରିବାକୁ ଲାଗିଲେ । ତାହାଙ୍କର ପାଣ୍ଡିତ୍ୟ ଓ ସାଧୁଚରିତ୍ରର ଯଶ ବ୍ୟାପ୍ତ ହେବାକୁ ଲାଗିଲା । ବହୁଦିନପରେ ତାହାଙ୍କର ପତ୍ନୀ ହିନ୍ଦୁ ସମାଜରୁ ଆସି ତାହାଙ୍କର ସହଚାରିଣୀ ହେଲେ । ସେ ଖ୍ରୀଷ୍ଟୀୟଧର୍ମର ଆଚାର୍ଯ୍ୟପଦରେ ନିଯୁକ୍ତ ହୋଇ ସେହି ଧର୍ମର ଯାଜନ କରିବାକୁ ପ୍ରବୃତ୍ତ ହେଲେ । ୧୮୪୫ ଅବ୍ଦରୁ ସେ ତଦାନୀନ୍ତନ ଗବର୍ଣ୍ଣରଜେନରଲଙ୍କ ପ୍ରରୋଚନାରେ ଅନେକ ଜ୍ଞାନ-ଗର୍ଭ ଗ୍ରନ୍ଥମାନ ପ୍ରଣୟନ କରିବାକୁ ଲାଗିଲେ । 'ସର୍ବାର୍ଥସଂଗ୍ରହ', 'ହିନ୍ଦୁଦର୍ଶନଶାସ୍ତ୍ର',

'ଆର୍ଯ୍ୟଶାସ୍ତ୍ରର ସାକ୍ଷ୍ୟ', ଏହି ଗବେଷଣାପୂର୍ଣ୍ଣ ଗ୍ରନ୍ଥମାନ ପ୍ରକାଶ କରି ଅସାଧାରଣ ପାଣ୍ଡିତ୍ୟର ପରିଚୟ ପ୍ରଦାନ କଲେ ଏବଂ ତାହାଙ୍କର ଗଭୀର ପାଣ୍ଡିତ୍ୟ ନିମିତ୍ତ ସେ ସର୍ବତ୍ର ସମ୍ମାନିତ ହେଲେ । ୧୮୭୬ ଅବ୍ଦରେ କଲିକତା ବିଶ୍ୱବିଦ୍ୟାଳୟ ତାହାଙ୍କୁ 'ଡକ୍ଟର' ବା ଆଚାର୍ଯ୍ୟ ଉପାଧି ପ୍ରଦାନ କଲେ । ସେହି ହେତୁରୁ ସେ ଡକ୍ଟର କେ. ଏମ୍. ବାନର୍ଜି ନାମରେ ବିଖ୍ୟାତ । ୧୮୮୫ ଖ୍ରୀଷ୍ଟାବ୍ଦରେ ସେ ପରଲୋକ ଗମନ କଲେ ।

ଡକ୍ଟର କୃଷ୍ଣମୋହନ ସତ୍ୟନିଷ୍ଠ ନିର୍ଭୀକ ପୁରୁଷ ଥିଲେ । ତାହାଙ୍କର ଅସାଧାରଣ ଅଧ୍ୟବସାୟ ଓ ସୂକ୍ଷ୍ମପ୍ରତିଭା ଦ୍ୱାରା ସେ ନାନାଭାଷାରେ ନାନା ଶାସ୍ତ୍ର ଆଲୋଚନା କରି ବହୁଜ୍ଞାନପୂର୍ଣ୍ଣ ଗ୍ରନ୍ଥମାନ ରଚନା କରିଯାଇଅଛନ୍ତି । ସେ ଏକାନ୍ତ କର୍ତ୍ତବ୍ୟପରାୟଣ ଥାଇ ଯେତେବେଳେ ଯେଉଁ କାର୍ଯ୍ୟର ଭାର ଗ୍ରହଣ କରୁଥିଲେ ତାହାକୁ ପ୍ରଗାଢ଼ଯତ୍ନସହକାରେ ସାଧନ କରୁଥିଲେ । ତାହାଙ୍କର ଚରିତ୍ର ପବିତ୍ର ଥିଲା ଏବଂ ସେ ଜୀବନର ଶେଷକାଳ ପର୍ଯ୍ୟନ୍ତ ସ୍ୱଦେଶର ଶିକ୍ଷା ଓ ଜାତିର ଉନ୍ନତି ନିମିତ୍ତ ନାନା ହିତକର ବ୍ୟାପାରରେ ନିଯୁକ୍ତ ଥିଲେ ।

## ପ୍ରଶ୍ନ

୧ । ଶତାବ୍ଦୀର ପ୍ରଥମ ପାଦ, ନବଯୁଗ, ସ୍ୱାଧୀନଚିନ୍ତା, ପ୍ରାଚୀନ କୁସଂସ୍କାର, ଏଗୁଡ଼ିକ ଦୃଷ୍ଟାନ୍ତଦ୍ୱାରା ବୁଝାଇଦିଅ ।

୨ । ଆଚାର୍ଯ୍ୟ, ଯାଜକ, ଚରିତ୍ର, ପର୍ଯ୍ୟାଲୋଚନା, ହିତୈଷୀ ଏହି ଶବ୍ଦମାନଙ୍କର ବ୍ୟୁତ୍ପତ୍ତି କଣ ?

୩ । କୃଷ୍ଣମୋହନଙ୍କର ଛାତ୍ରଜୀବନ ବର୍ଣ୍ଣନ କର ।

୪ । କୃଷ୍ଣମୋହନଙ୍କ ଚରିତ୍ରର ପ୍ରଧାନ ଲକ୍ଷଣଗୁଡ଼ିକ ନିର୍ଦ୍ଦେଶ କର ।

# ପଦ୍ମ

( କଳହଂସ କେଦାର ବୃତ୍ତ )

କୋଟିଲ୍ଲବର୍ଣ୍ଣନଅଧି ରେ ପଦ୍ମ ତୁହି ।
କି ଅମୃତେ ତୋ ତନୁ ଗଢ଼ିଲା ବିହି ?
ତୋ ରୂପ ଦରଶନେ ମୋର ହୃଦୟ
ପୂର୍ଣ୍ଣ ଆନନ୍ଦେ ହୁଏ ଅମୃତମୟ ।

୨

ତଳ ତଳ ସୁନୀଳ ସରସୀଜଳ
ତଳ ତଳ ଶ୍ୟାମଳ ନଳିନୀଦଳ ।
ତଳ ତଳ ଭାସ୍କର- ରଶ୍ମି ଉଜ୍ଜ୍ୱଳ
ତା ମଧ୍ୟେ ତଳ ତଳ ତୁହି କମଳ ।

୩

ହସ ହସି ବଦନେ ହରସଭରେ
ଅନାଇ ରହିଅଛୁ ତୁ ଦିବାକରେ ।
ତୋ ମୁଖେ ଜ୍ୟୋତଧାର ସେ ଦିବାକର
ଢାଳଇ ଅବିରଳ ଆରେ ପୁଷ୍କର ।

୪ ।

ପିଉ ତୁ କି ଆନନ୍ଦେ ପୀୟୂଷ ସ୍ୱଚ୍ଛ
ସେ ଶୁଭ୍ର ଜ୍ୟୋତଧାର ଭକତ କଚ୍ଛ ।
ଆହା କି ଦିବ୍ୟଶିରୀ ତହିଁ ତୁ ଲଭୁ ।
ଧନ୍ୟ ଉତ୍ପଳ, ଧନ୍ୟ ତୋହର ପ୍ରଭୁ ।

୫

ମକରନ୍ଦ-ଅମୃତ ହୃଦେ ତୋହର
ତହିଁ ସ୍ଫୁରଇ ବାସ କି ମନୋହର !

ସେ ମଧୁପାନେ    ମତ୍ତ ମଧୁପଦଳ
ସେ ସୌରଭେ ପରାଣ    କେତେ ଶୀତଳ ।

୬

ଶ୍ୱେତଲୋହିତେ ରଙ୍ଗା    ତୋ ଶୁଭ୍ର ତନୁ
ବାରେ ଦେଖିଲେ, କେଭେଁ    ନ ଯିବ ମନୁ ।
ସର୍ବ ଶୋଭାର ଉତ୍ସ    ଉପମାସ୍ଥଳ
ଭକତ ପ୍ରେମିକର    ଉତ୍ସ ସମ୍ବଳ

୭

ସ୍ନେହ କରୁଣା ଭକ୍ତି    ପବିତ୍ର ରସ
ପୂରିଛି ତୋ ଅନ୍ତର,    ରେ ତାମରସ ।
ନୋହିଲେ କାହିଁ ତୋର    ଦର୍ଶନେ ମନ
ବିମଳ ପ୍ରେମରସେ    ହୁଏ ମଗନ ?

୮

ମଧୁମୟ ପବିତ୍ର    ଯାହା ବର୍ଣ୍ଣନେ
ତୋ ନାମ ସଙ୍ଗେ ମିଶା    ବିଧାତା-ବରେ,
ପ୍ରିୟମୁଖ ନୟନ—    କରେ ତର୍ପଣ
ତୋ ନାମ ସଙ୍ଗେ ଯିନା    ସୁଖ କାରଣ ।

୯

ସତ୍ୟ ଶିବ ସୁନ୍ଦର    ପରମେଶ୍ୱର—
ନାମ ସଙ୍ଗତେ ଲଗ୍ନ    ନାମ ତୋହର ।
ତେଣୁ ରେ ଅରବିନ୍ଦ,    ଭକ୍ତ ଜନର
ବିଭୁ-ପଦାରବିନ୍ଦ    ସୁମନୋହର ।

୧୦

ସର୍ବ ଶୋଭାର ଛନ୍ଦ    ରେ ପଦ୍ମ ତୋର
ସଙ୍ଗେ ନିଗୂଢ଼ ଯୋଗ    ଅଛିରେ ମୋର ।

ଏହି ନକ୍ଷତ୍ରମାନେ କ୍ଷଣକାଳ ପରସ୍ପରର ସୌନ୍ଦର୍ଯ୍ୟ ଆଲୋଚନା କଲେ । ପ୍ରତ୍ୟେକେ ଆପଣାକୁ ସମୁଦାୟ ବ୍ରହ୍ମାଣ୍ଡର ମଧ୍ୟବର୍ତ୍ତୀ ଜ୍ୟୋତିଷ୍କ ଜ୍ଞାନ କଲେ ; କିନ୍ତୁ ସେମାନଙ୍କର ଏହି ଭ୍ରାନ୍ତି ଶୀଘ୍ର ଦୂରିତ ହେଲା । ଆତ୍ମଜ୍ଞାନ ସର୍ବଜ୍ଞାନର ସତ୍ୟତାର ପରମାପକ ଅଟେ । ମୁହୂର୍ତ୍ତକ ଭିତରେ ସେମାନେ ବିମଳ ଅମ୍ବୁରାଶି ଆଡ଼କୁ ଦୃଷ୍ଟି ପକାଇଲେ । ସେହି ଜଳଦର୍ପଣରେ ନିଜ ମୂର୍ତ୍ତିର ପ୍ରତିବିମ୍ବ ଦର୍ଶନ କରି ଅତ୍ୟନ୍ତ ଲଜ୍ଜିତ ହେଲେ ଏବଂ ନମ୍ରଭାବ ଅବଲମ୍ବନ କଲେ । ମାତ୍ର ଧୂମକେତୁ ସୂର୍ଯ୍ୟଆଡ଼କୁ ଦୀର୍ଘ ଉଜ୍ଜ୍ୱଳ ଲାଙ୍ଗୁଳ ବିସ୍ତାର କରି ଆପଣାକୁ ଜ୍ୟୋତିଷ୍କ-ରାଜ ବୋଲି ମଣିବାକୁ ଲାଗିଲା । ଏମନ୍ତ ସମୟରେ ଗୋଟିଏ ନବୀନ ପଦାର୍ଥ ଜ୍ୟୋତିଷ୍କମାନଙ୍କର ଦୃଷ୍ଟିଗୋଚର ହେଲା । ଗୋଟିଏ ସୂକ୍ଷ୍ମ ଜ୍ୟୋତିଃସୂତ୍ର ଦିଗ୍ବଳୟୋପରି ଉଦିତ ହେଲା । ଏହିଟି ପ୍ରଥମ ପ୍ରତିପଚ୍ଚନ୍ଦ୍ର । ସୌନ୍ଦର୍ଯ୍ୟାନ୍ୱିତ ପ୍ରଭାମୟ ନକ୍ଷତ୍ରପୁଞ୍ଜ ଅବଲୋକନ କରି ଚନ୍ଦ୍ର ଭୀତ ଓ ଲଜ୍ଜିତ ହୋଇ ଆପଣାର କ୍ଷୀଣ ଆଉ କୁତ୍ସିତ ରୂପକୁ ଶୀଘ୍ର ସାଗରଗର୍ଭସ୍ଥ କଲା । ଚନ୍ଦ୍ର ଗଗନରୁ ତିରୋହିତ ହେଲାକ୍ଷଣି ନକ୍ଷତ୍ରମାନେ ବିସ୍ମୟାନ୍ୱିତ ହୋଇ ପରସ୍ପର ପ୍ରତି ଜିଜ୍ଞାସୁ-ନୟନରେ ଅନାଇଲେ । "ଆଃ ! ଏଉଟା କି ବିଙ୍କାମୂର୍ତ୍ତି" ଏହା ବୋଲି ସେମାନେ ଅସ୍ତଗତ ଚନ୍ଦ୍ରକୁ ଉପହାସ କରିବାକୁ ଲାଗିଲେ । ଅବଶେଷରେ ସେମାନେ ନିଜ ତେଜର ହ୍ରାସ ଅନୁଭବ କଲେ । ପ୍ରାଚୀଦିଗରେ ଅରୁଣ ଉଦିତ ହେଲା ଏବଂ ସେମାନେ କ୍ରମେ କ୍ରମେ ଗଗନରେ ବିଲୀନ ହେଲେ ।

ତହିଁଆର ସନ୍ଧ୍ୟାରେ ସେହି ନକ୍ଷତ୍ରମାନେ ଜାଗ୍ରତ ହୋଇ ଚକ୍ଷୁ-ରୁନ୍ମୀଳନ କଲେ । କ୍ରହିଁ ଦେଖିଲେ ଯେ ପୂର୍ବରାତ୍ରିର ନକ୍ଷତ୍ରସମୂହ ମଧ୍ୟରୁ କେହି ଅନୁପସ୍ଥିତ ନାହିଁ । କ୍ଷୁଦ୍ର ବକ୍ର ଚନ୍ଦ୍ରରେଖା ପୁନର୍ବାର ଦୃଷ୍ଟିପଥାରୂଢ଼ ହେଲା । ଏହାର ତେଜଃ ପୂର୍ବରଜନୀ ଅପେକ୍ଷା କିଞ୍ଚିତ୍ ବଢ଼ିଥିଲା ସତ୍ୟ, ମାତ୍ର କ୍ରମେ କ୍ରମେ ଏହାର ବଳୟ ଉପସ୍ଥିତ ହେଲା । ଏଣୁ ଧୂମକେତୁ ପୂର୍ବବତ୍ ଆକାଶର ଅଧିରାଜ ହୋଇ ସମସ୍ତ ନକ୍ଷତ୍ରକୁ ଶାସନ କରିବାକୁ ଲାଗିଲା ।

ତୃତୀୟ ସନ୍ଧ୍ୟାରେ ଚନ୍ଦ୍ରର ଆକାର ଏବଂ ତେଜଃ ବହୁତ ବଢ଼ିଥିଲା ଏବଂ

ସେ ଅପେକ୍ଷାକୃତ ଅଧିକକାଳ ଆକାଶରେ ଦେଦୀପ୍ୟମାନ ହେଲା । ନକ୍ଷତ୍ର-ମାନେ ଏହା ଦେଖି ବିସ୍ମିତ ହେଲେ ଏବଂ ତନ୍ମାତ୍ର ଉତ୍ତରେ ତଦ୍‌ବିଷୟକ କଥାବାର୍ତ୍ତାରେ ସେ ରଜନୀ ଯାପନ କଲେ । ଅବଶେଷରେ ମୃଦୁ ପ୍ରଭାତ-ବାୟୁ ବହିବାକୁ ଲାଗିଲା । ସୂର୍ଯ୍ୟର ହିରଣ୍ମୟ ପ୍ରଭାରେ ଧରାତଳ ରଞ୍ଜିତ ହେଲା ।

ପରଦିବସରେ ଚନ୍ଦ୍ର ଉଦିତ ହୋଇ ଆକାଶରେ ଉଚ୍ଚତର ଆସନ ଗ୍ରହଣ କଲା । ତାହାର ପ୍ରଭାବୃଦ୍ଧି ହେତୁରୁ ସମୀପବର୍ତ୍ତୀ ନକ୍ଷତ୍ରମାନେ ମ୍ଳାନ ହେଲେ, କେହି କେହି ଅବା ଅଦୃଶ୍ୟ ହେଲେ । ଏହାର ଯଥାର୍ଥ କାରଣ ବୁଝି ନ ପାରି ନକ୍ଷତ୍ରମାନେ ସଶଙ୍କ ହୋଇ ପଚାରିଲେ ଯେ, ଚନ୍ଦ୍ର ସେମାନଙ୍କର ତେଜଃ ହରଣ କରି ନିଜ କଳେବର ବର୍ଦ୍ଧିତ କରୁଅଛି, ଏବଂ ଅଚିରାତ୍ ସମସ୍ତଙ୍କର ଜ୍ୟୋତିଃ ଅପହରଣ କରି ସ୍ୱଦେହ ମଣ୍ଡନ କରିବ ।

ଚନ୍ଦ୍ର ପ୍ରତିଦିନ ଏହିପରି ବୃହତ୍ତର ଏବଂ ମନୋଜ୍ଞତର ହେବାକୁ ଲାଗିଲା, ତଥାପି ସେ ଏତେବେଳଯାଏ ବକ୍ରତା ଅବଲମ୍ବନ କରିଥିଲା, ଅବଶେଷରେ ଗୋଲାକାର ଧାରଣ କଲା । ପୌର୍ଣ୍ଣମାସୀ ରଜନୀରେ ଗର୍ବିତଭାବରେ ଗଗନ ମଧ୍ୟରେ ଅବସ୍ଥାନ କରି ଧରଣୀତଳକୁ ଶୀତଳ ଧବଳରଶ୍ମିରେ ରଞ୍ଜିତ କଲା । ଆପଣାର ରୂପଶ୍ରୀ ସମୁଦ୍ରରେ ପ୍ରତିବିମ୍ବିତ ଦେଖି ଆପେ ମୁଗ୍ଧ ହେଲା । ନକ୍ଷତ୍ର-ମାନେ ଆକାଶମଧ୍ୟରେ ଲୁଚି ରହି ଚନ୍ଦ୍ରର ପରମଶୋଭା ନିରୀକ୍ଷଣ କରିବାକୁ ଲାଗିଲେ ।

ଚନ୍ଦ୍ରର ତେଜଃ ଏବଂ ଆୟତନ କେତେଦୂର ପରିବର୍ଦ୍ଧିତ ହେବ, ସେ ତାହା ନିଜେ ସ୍ଥିର କରି ପାରିଲା ନାହିଁ । ଗର୍ବବିମୋହିତ ହୋଇ ଭାବିବାକୁ ଲାଗିଲା ଅବଶେଷରେ ଆକାଶଯାକ ଚନ୍ଦ୍ର ହୋଇଯିବ । ଭ୍ରାନ୍ତିର ଅଧୀନ ହୋଇ ଏମନ୍ତ ଚିନ୍ତା କରିବା ସମୟରେ ହଠାତ୍ ତାହାର ସୁନ୍ଦର ଆନନଶ୍ରୀ ବିବର୍ଣ୍ଣ ହୋଇଗଲା । କ୍ରମେ କ୍ରମେ ତାହାର ସମୁଦାୟ ଶରୀର କଳା-ପଡ଼ିଗଲା । ଅବଶେଷରେ ସେ ଆକାଶର କଳଙ୍କରୂପ ପ୍ରତିଭାତ ହେଲା । ଏହି ଅବକାଶରେ ନକ୍ଷତ୍ରମାନେ ମହୋଲ୍ଲାସପୂର୍ବକ ପୁନରୁଦିତ ହୋଇ

ତାହାର ଦୁର୍ଦ୍ଦଶା ଅବଲୋକନ କଲେ । କିନ୍ତୁ ସେମାନଙ୍କର ଅଯଥା ଆହ୍ଲାଦ ଶୀଘ୍ର ନିରାକୃତ ହେଲା । ଚନ୍ଦ୍ରୋପରି ପତିତ ଛାୟା ଅପସାରିତ ହେଲା । ଚନ୍ଦ୍ର ପୂର୍ବବତ୍ ଆକାଶମଣ୍ଡଳରେ ଦେଦୀପ୍ୟମାନ ହେବାକୁ ଲାଗିଲା ।

ତହିଁଆର ରଜନୀରେ ଚନ୍ଦ୍ର କିଛି ବିଳମ୍ବ କରି ଉଦିତ ହେଲା । ପୃଥିବୀ-ଉପରେ ପରିଭ୍ରମଣ କରିବାବେଳେ ସେ ଆପଣାର ତେଜୋହ୍ରାସ ଅନୁଭବ କଲା । ମାତ୍ର ଯେତେବେଳେ ସେ ସମୁଦ୍ରମୁକୁରରେ ନିଜ ପ୍ରତିବିମ୍ବ ଦେଖିଲା, ସେତେବେଳେ ତାହାର ଆଉ ସନ୍ଦେହ ରହିଲା ନାହିଁ । ଏହି ସମୟରେ ପ୍ରବଳ ଝଞ୍ଜାବାୟୁ ଉପସ୍ଥିତ ହେଲା । ଫେନଚୂଡ଼ ତରଙ୍ଗମାନେ ଗର୍ଜ୍ଜନ କରିବାକୁ ଲାଗିଲେ । ଚନ୍ଦ୍ରର ଆକର୍ଷଣପ୍ରଭାବରୁ ପ୍ରଥମ ଜୁଆର ଆରମ୍ଭ ହେଲା । ବଜ୍ରନାଦରେ ଆକାଶ ବିଦୀର୍ଣ୍ଣ ହେବାକୁ ଲାଗିଲା ଏବଂ ଅବିଶ୍ରାନ୍ତ ଧାରାରେ ବୃଷ୍ଟିପତନ ହେଲା । ଚନ୍ଦ୍ର କୃଷ୍ଣବର୍ଣ୍ଣ ମେଘାବଳୀ ମଧ୍ୟରେ ଲୁଚିଗଲା, ନକ୍ଷତ୍ର-ମାନେ ମଧ୍ୟ ସେହି ଦଶା ଭୋଗ କଲେ । ତେଣୁ ଚନ୍ଦ୍ରର ଦୁର୍ଦ୍ଦଶାରେ ଉଲ୍ଲାସିତ ହେବାକୁ ଅବସର ପାଇଲେ ନାହିଁ ।

ଏଣିକି ଚନ୍ଦ୍ର ଦିନକୁଦିନ ଅଧିକ ବିଳମ୍ବ କରି ଉଦିତ ହେଲା । ତାହାର ରୂପ ମଧ୍ୟ ମ୍ଳାନତର ହେବାକୁ ଲାଗିଲା । ଯେଉଁ କ୍ଷୁଦ୍ର ନକ୍ଷତ୍ରମାନେ ପୂର୍ବେ ଅଦୃଶ୍ୟ ହୋଇଥିଲେ, ସେମାନେ ଚନ୍ଦ୍ରର ହ୍ରାସ ଦେଖି ପୁନର୍ବାର ଆବିର୍ଭୂତ ହେଲେ । କିଛିଦିନ ପୂର୍ବରେ ଚନ୍ଦ୍ର ସୌଭାଗ୍ୟମଦରେ ମତ୍ତ ହୋଇଥିଲା, ସମ୍ପ୍ରତି ବିପତ୍ତିପାତ ହେବାରୁ ପୁନର୍ବାର ବିନୟ ଅବଲମ୍ବନ କରି ମୃଦୁ ସୌନ୍ଦର୍ଯ୍ୟ-ଦ୍ୱାରା ନକ୍ଷତ୍ରମାନଙ୍କର ଆଦର ଲାଭ କଲା ।

ଅବଶେଷରେ ଏମନ୍ତ ଏକ ରଜନୀ ଆସିଲା ଯେ, ତହିଁରେ ଚନ୍ଦ୍ରୋଦୟ ହେଲା ନାହିଁ । ଏଥିପୂର୍ବରୁ ଧୂମକେତୁ ଅନ୍ତର୍ହିତ ହୋଇଥିଲା । ନକ୍ଷତ୍ରମାନେ ସେହି ରଜନୀରେ ସ୍ତବ୍ଧଭାବ ଅବଲମ୍ବନ କରି ସମୁଦାୟ ମାସର ପରିବର୍ତ୍ତନ ବିଷୟ ଚିନ୍ତା କରିବାକୁ ଲାଗିଲେ । ସେହି ଚିନ୍ତାରୁ ସନ୍ତୋଷ ଓ ବିନୟ ଶିକ୍ଷା କରି ସ୍ୱସ୍ୱ ଭାଗ୍ୟ ଲାଗି ଈଶ୍ୱରଙ୍କଠାରେ କୃତଜ୍ଞ ହେଲେ ।

ସେ ଅପେକ୍ଷାକୃତ ଅଧିକକାଳ ଆକାଶରେ ଦେଦୀପ୍ୟମାନ ହେଲା । ନକ୍ଷତ୍ର-ମାନେ ଏହା ଦେଖି ବିସ୍ମିତ ହେଲେ ଏବଂ ଚନ୍ଦ୍ରାସ୍ତ ଉତ୍ତାରେ ତଦ୍‌ବିଷୟକ କଥାବାର୍ତ୍ତାରେ ସେ ରଜନୀ ଯାପନ କଲେ । ଅବଶେଷରେ ମୃଦୁ ପ୍ରଭାତ-ବାୟୁ ବହିବାକୁ ଲାଗିଲା । ସୂର୍ଯ୍ୟର ହିରଣ୍ମୟ ପ୍ରଭାରେ ଧରାତଳ ରଞ୍ଜିତ ହେଲା ।

ପରରାତ୍ରରେ ଚନ୍ଦ୍ର ଉଦିତ ହୋଇ ଆକାଶରେ ଉଚ୍ଚତର ଆସନ ଗ୍ରହଣ କଲା । ତାହାର ପ୍ରଭାବୃଦ୍ଧି ହେତୁରୁ ସମୀପବର୍ତ୍ତୀ ନକ୍ଷତ୍ରମାନେ ମ୍ଳାନ ହେଲେ, କେହି କେହି ଅବା ଅଦୃଶ୍ୟ ହେଲେ । ଏହାର ଯଥାର୍ଥ କାରଣ ବୁଝି ନ ପାରି ନକ୍ଷତ୍ରମାନେ ସଶଙ୍କ ହୋଇ ଭାବିଲେ ଯେ, ଚନ୍ଦ୍ର ସେମାନଙ୍କର ତେଜଃ ହରଣ କରି ନିଜ କଳେବର ବର୍ଦ୍ଧିତ କରୁଅଛି, ଏବଂ ଅଚିରାତ୍ ସମସ୍ତଙ୍କର ଜ୍ୟୋତିଃ ଅପହରଣ କରି ସ୍ୱଦେହ ମଣ୍ଡନ କରିବ ।

ଚନ୍ଦ୍ର ପ୍ରତିରାତ୍ର ଏହିପରି ବୃହତ୍ତର ଏବଂ ମନୋଜ୍ଞତର ହେବାକୁ ଲାଗିଲା, ତଥାପି ସେ ଏତେବେଳଯାଏ ବକ୍ରମୂର୍ତ୍ତି ଅବଲମ୍ବନ କରିଥିଲା, ଅବଶେଷରେ ଗୋଲାକାର ଧାରଣ କଲା । ପୌର୍ଣ୍ଣମାସୀ ରଜନୀରେ ଗର୍ବିତଭାବରେ ଗଗନ ମଧ୍ୟରେ ଅବସ୍ଥାନ କରି ଧରଣୀତଳକୁ ଶୀତଳ ଧବଳରଶ୍ମିରେ ରଞ୍ଜିତ କଲା । ଆପଣାର ରୂପଶ୍ରୀ ସମୁଦ୍ରରେ ପ୍ରତିବିମ୍ବିତ ଦେଖି ଆପେ ମୁଗ୍ଧ ହେଲା । ନକ୍ଷତ୍ର-ମାନେ ଆକାଶମଧ୍ୟରେ ଲୁଚି ରହି ଚନ୍ଦ୍ରର ପରମଶୋଭା ନିରୀକ୍ଷଣ କରିବାକୁ ଲାଗିଲେ ।

ଚନ୍ଦ୍ରର ତେଜଃ ଏବଂ ଆୟତନ କେତେଦୂର ପରିବର୍ଦ୍ଧିତ ହେବ, ସେ ତାହା ନିଜେ ସ୍ଥିର କରି ପାରିଲା ନାହିଁ । ଗର୍ବବିମୋହିତ ହୋଇ ଭାବିବାକୁ ଲାଗିଲା ଅବଶେଷରେ ଆକାଶଯାକ ଚନ୍ଦ୍ର ହୋଇଯିବ । ଭ୍ରାନ୍ତିର ଅଧୀନ ହୋଇ ଏମନ୍ତ ଚିନ୍ତା କରିବା ସମୟରେ ହଠାତ୍ ତାହାର ସୁନ୍ଦର ଆନନଶ୍ରୀ ବିବର୍ଣ୍ଣ ହୋଇଗଲା । କ୍ରମେ କ୍ରମେ ତାହାର ସମୁଦାୟ ଶରୀର କଳା-ପଡ଼ିଗଲା । ଅବଶେଷରେ ସେ ଆକାଶର କଳଙ୍କରୂପ ପ୍ରତିଭାତ ହେଲା । ଏହି ଅବକାଶରେ ନକ୍ଷତ୍ରମାନେ ମହୋଲ୍ଲାସପୂର୍ବକ ପୁନରୁଦିତ ହୋଇ

ତାହାର ଦୁର୍ଦ୍ଦଶା ଅବଲୋକନ କଲେ । କିନ୍ତୁ ସେମାନଙ୍କର ଅଯଥା ଆହ୍ଲାଦ ଶୀଘ୍ର ନିରାକୃତ ହେଲା । ଚନ୍ଦ୍ରୋପରି ପତିତ ଛାୟା ଅପସାରିତ ହେଲା । ଚନ୍ଦ୍ର ପୂର୍ବବତ୍ ଆକାଶମଣ୍ଡଳରେ ଦେଦୀପ୍ୟମାନ ହେବାକୁ ଲାଗିଲା ।

ତହିଁଆରରଜନୀରେ ଚନ୍ଦ୍ର କିଛି ବିଳମ୍ବ କରି ଉଦିତ ହେଲା । ପୃଥିବୀ-ଉପରେ ପରିଭ୍ରମଣ କରିବାବେଳେ ସେ ଆପଣାର ତେଜୋହ୍ରାସ ଅନୁଭବ କଲା । ମାତ୍ର ଯେତେବେଳେ ସେ ସମୁଦ୍ରମୁକୁରରେ ନିଜ ପ୍ରତିବିମ୍ବ ଦେଖିଲା, ସେତେବେଳେ ତାହାର ଆଉ ସନ୍ଦେହ ରହିଲା ନାହିଁ । ଏହି ସମୟରେ ପ୍ରବଳ ଝଞ୍ଜାବାୟୁ ଉପସ୍ଥିତ ହେଲା । ଫେନଚୂଡ଼ ତରଙ୍ଗମାନେ ଗର୍ଜ୍ଜନ କରିବାକୁ ଲାଗିଲେ । ଚନ୍ଦ୍ରର ଆକର୍ଷଣପ୍ରଭାବରୁ ପ୍ରଥମ ଜୁଆର ଆରମ୍ଭ ହେଲା । ବଜ୍ରନାଦରେ ଆକାଶ ବିଦୀର୍ଣ୍ଣ ହେବାକୁ ଲାଗିଲା ଏବଂ ଅବିଶ୍ରାନ୍ତ ଧାରାରେ ବୃଷ୍ଟିପତନ ହେଲା । ଚନ୍ଦ୍ର କୃଷ୍ଣବର୍ଣ୍ଣ ମେଘାବଳୀ ମଧ୍ୟରେ ଲୁଚିଗଲା, ନକ୍ଷତ୍ର-ମାନେ ମଧ୍ୟ ସେହି ଦଶା ଭୋଗ କଲେ । ତେଣୁ ଚନ୍ଦ୍ରର ଦୁର୍ଦ୍ଦଶାରେ ଉଲ୍ଲାସିତ ହେବାକୁ ଅବସର ପାଇଲେ ନାହିଁ ।

ଏଣିକି ଚନ୍ଦ୍ର ଦିନକୁଦିନ ଅଧିକ ବିଳମ୍ବ କରି ଉଦିତ ହେଲା । ତାହାର ରୂପ ମଧ୍ୟ ମ୍ଳାନତର ହେବାକୁ ଲାଗିଲା । ଯେଉଁ କ୍ଷୁଦ୍ର ନକ୍ଷତ୍ରମାନେ ପୂର୍ବେ ଅଦୃଶ୍ୟ ହୋଇଥିଲେ, ସେମାନେ ଚନ୍ଦ୍ରର ହ୍ରାସ ଦେଖି ପୁନର୍ବାର ଆବିର୍ଭୂତ ହେଲେ । କିଛିଦିନ ପୂର୍ବରେ ଚନ୍ଦ୍ର ସୌଭାଗ୍ୟମଦରେ ମତ୍ତ ହୋଇଥିଲା, ସମ୍ପ୍ରତି ବିପରୀପାତ ହେବାରୁ ପୁନର୍ବାର ବିନୟ ଅବଲମ୍ବନ କରି ମୃଦୁ ସୌନ୍ଦର୍ଯ୍ୟ-ଦ୍ୱାରା ନକ୍ଷତ୍ରମାନଙ୍କର ଆଦର ଲାଭ କଲା ।

ଅବଶେଷରେ ଏମନ୍ତ ଏକ ରଜନୀ ଆସିଲା ଯେ, ତହିଁରେ ଚନ୍ଦ୍ରୋଦୟ ହେଲା ନାହିଁ । ଏଥିପୂର୍ବରୁ ଧୂମକେତୁ ଅନ୍ତର୍ହିତ ହୋଇଥିଲା । ନକ୍ଷତ୍ରମାନେ ସେହି ରଜନୀରେ ସ୍ତବ୍ଧଭାବ ଅବଲମ୍ବନ କରି ସମୁଦାୟ ମାସର ପରିବର୍ତ୍ତନ ବିଷୟ ଚିନ୍ତା କରିବାକୁ ଲାଗିଲେ । ସେହି ଚିନ୍ତାରୁ ସନ୍ତୋଷ ଓ ବିନୟ ଶିକ୍ଷା କରି ସ୍ୱସ୍ୱ ଭାଗ୍ୟ ଲାଗି ଈଶ୍ୱରଙ୍କଠାରେ କୃତଜ୍ଞ ହେଲେ ।

ତହିଁଆର ସନ୍ଧ୍ୟାରେ ପ୍ରତିପଚ୍ଚନ୍ଦ୍ର ପୁନର୍ବାର ଦୃଷ୍ଟିଗୋଚର ହେଲା ; ନକ୍ଷତ୍ରମାନେ ବିସ୍ମୟ ଏବଂ ଆହ୍ଲାଦରେ ତାହାକୁ ଅଭିନନ୍ଦନ କଲେ । ଚନ୍ଦ୍ରାସ୍ତର ପ୍ରାକ୍କାଳରେ ଜଣେ ଦିବ୍ୟ ପୁରୁଷ ଧନୁଃସ୍ୱରୂପ ଚନ୍ଦ୍ରର ଦୁଇ କୋଟିରେ ଚରଣ ସ୍ଥାପନ କରି ଥରେ ସମୁଦାୟ ବ୍ରହ୍ମାଣ୍ଡକୁ ଅବଲୋକନ କଲେ । ଦେଖିଲେ ତାଙ୍କ ପଛଆଡ଼େ ସୂର୍ଯ୍ୟ, ପଦତଳେ ଚନ୍ଦ୍ର, ସମ୍ମୁଖରେ ପୃଥିବୀ ଏବଂ ମସ୍ତକୋପରି ନକ୍ଷତ୍ରରାଜି, ଏହା ଦେଖିଲାକ୍ଷଣି ଈଶ୍ୱରଙ୍କର ଅନନ୍ତମହିମା-ଚିନ୍ତାରେ ତାଙ୍କ ହୃଦୟ ସ୍ତବ୍ଧ ହୋଇଗଲା । ପ୍ରୀତିପୂର୍ଣ୍ଣ ଦିବ୍ୟସ୍ୱରରେ ସେ ଈଶ୍ୱରଙ୍କୁ ଏହି ଭାବରେ ଆରାଧନା କଲେ—

ହେ ଅନନ୍ତ ମହାପ୍ରଭୋ ! କେ ପାରିବ ବର୍ଣ୍ଣି
ତୋର ମହିମାର କଥା ; ଅପାର ଅଗମ୍ୟ,
ତର୍କର ଅତୀତ, ବିଭୋ ! କି ବୁଝିବି ମୁହିଁ ।
ଜ୍ଞାନ ବୁଦ୍ଧି ପରାଜିତ ତୋ ତତ୍ତ୍ୱଚିନ୍ତାରେ ।
ତୋହର ମହିମା ଗୁଣେ ଦ୍ୟୁଲୋକ ଭୂଲୋକ,
କୋଟି ବିଶ୍ୱ, କୋଟି ସୂର୍ଯ୍ୟ, କୋଟି ଚନ୍ଦ୍ର, ତାରା,
ଅଗଣିତ ଜୀବରାଶି ସ୍ତବଧ ବିସ୍ମୟେ ।
ସେ ମହିମା, କ୍ଷୁଦ୍ର ମୁହିଁ, କେମନ୍ତେ ବୁଝିବି
ମୋହର ଏ କ୍ଷୁଦ୍ର ଆତ୍ମା ବିହ୍ୱଳେ ସ୍ତବଧ,
ଭୟେ ଅବସନ୍ନ ଥାପି ସେ ମହିମା-ତତ୍ତ୍ୱ,
ଆକୁଳେ ଲୋଡ଼ଇ ଆଶ୍ରା ତୋ ଅନନ୍ତ କୋଡ଼େ ।

## ପ୍ରଶ୍ନ

୧ । ଏହି "ଚନ୍ଦ୍ର ଓ ତାରା" କଳ୍ପିତ ଉପାଖ୍ୟାନରୁ କି କି ଉପଦେଶ ମିଳଇ ?

୨ । ଆତ୍ମଜ୍ଞାନ ସର୍ବଜ୍ଞାନର ସତ୍ୟତାର ପରମାପକ ଅଟେ, ଏହି ବାକ୍ୟଟିର ଦୃଷ୍ଟାନ୍ତ ସ୍ପଷ୍ଟରୂପେ ବୁଝାଇଦିଅ ।

୩ । ଦୃଷ୍ଟିପଥାରୂଢ଼ ପ୍ରସ୍ତପରିଚ୍ଛଦ, ଦ୍ୟୁଲୋକ, ଫେନଚୂଡ଼ତରଙ୍ଗ ଏ ପଦ-ମାନଙ୍କର ସମାସ ବ୍ୟାଖ୍ୟା କର ।

୪ । ଏହି ପ୍ରବନ୍ଧରେ ଥିବା ତଦ୍ଧିତପ୍ରତ୍ୟୟନିଷ୍ପନ୍ନ ଶବ୍ଦଗୁଡ଼ିକ ବାଛି ବାଛି ସେମାନଙ୍କର ମୂଳଶବ୍ଦ ଓ ପ୍ରତ୍ୟୟ ଲେଖ ।

୫ । ଦ୍ୱିଗୁଣିତ, ଧୂମକେତୁ, ଜିଜ୍ଞାସୁନୟନ, ତତ୍ତ୍ୱର ଅତୀତ, ରୂପଶ୍ରୀ ଏଗୁଡ଼ିକର ଅର୍ଥ ବୋଲ ।

୬ । ଜିଜ୍ଞାସୁ, ଦେଦୀପ୍ୟମାନ, ମ୍ଳାନ, ଯାପନ, ସ୍ଥାପନ, ଅନ୍ତର୍ହିତ, ବର୍ଦ୍ଧିଷ୍ଣୁ, ବିକୀର୍ଣ୍ଣ, ବୃହତ୍ତର ଏ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ବୋଲ ।

## ରାଣୀ ଦୁର୍ଗାବତୀ

ଊନବିଂଶ ଶତାବ୍ଦୀର ଭାରତୀୟ ନାରୀମାନଙ୍କର ଦୁର୍ଦ୍ଦଶା ଅବଲୋକନ କରି କିଏ ବିଶ୍ୱାସ କରିବ ଯେ, ଏହି ହତଭାଗ୍ୟଦେଶ ଏକ ସମୟରେ ସମର-ବିଳାସିନୀ ମନସ୍ୱିନୀ ବୀରବାଳାମାନଙ୍କର ବିଳାସକ୍ଷେତ୍ର ଥିଲା ? "ଭାରତୀୟ ବୀରନାରୀ" ଆଜି ଏହି ପଦଗୁଡ଼ିକ ଆମ୍ଭମାନଙ୍କ ସମୀପରେ ଅସାର ପ୍ରଳାପତୁଲ୍ୟ ପ୍ରତୀୟମାନ ହେଉଅଛି ସତ୍ୟ ; କିନ୍ତୁ ଏହା କାହାରି କପୋଳକଳ୍ପିତ ନୁହେଁ । ମୁସଲମାନ ଇତିହାସ ବିଜୟନିର୍ଘୋଷରେ ସେହି ବୀରେନ୍ଦ୍ରବରଣୀୟା ନାରୀମାନଙ୍କର କୀର୍ତ୍ତିଗାନ କରୁଅଛି । କବିମାନଙ୍କର ଅମୃତ ଏବଂ ପବିତ୍ର କଣ୍ଠ ସେମାନଙ୍କର ମନୋହର ଚରିତକୁ ଅମର ସଙ୍ଗୀତରେ ନିବଦ୍ଧ କରିଅଛି । ରାଣୀ ଦୁର୍ଗାବତୀ ସେହି ପୁଣ୍ୟକୀର୍ତ୍ତି ବୀରାଙ୍ଗନାମାନଙ୍କ ମଧ୍ୟରେ ଅଗ୍ରଗଣନୀୟା ।

ମଧ୍ୟଭାରତବର୍ଷରେ ଗଡ଼ମଣ୍ଡଳ ନାମକ ନର୍ମ୍ମଦାତଟବର୍ତ୍ତୀ ଗୋଟିଏ ସୁବିସ୍ତୀର୍ଣ୍ଣ ଜନପଦ ଅଛି । ତାହାର ଉତ୍ତରରେ ବୁନ୍ଦେଲଖଣ୍ଡ, ପୂର୍ବରେ

ରତନପୁର ପଶ୍ଚିମରେ ମାଳବ ଏବଂ ଦକ୍ଷିଣରେ ଦାକ୍ଷିଣାତ୍ୟ । ଏହି ପ୍ରଦେଶର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ବିଚିତ୍ର ଏବଂ କମନୀୟ । ଶ୍ୟାମଚ୍ଛବି ଅନନ୍ତକାନନଶ୍ରେଣୀ, ନିର୍ଝର ଝଙ୍କାରପୂର୍ଣ୍ଣ ତୁଙ୍ଗ ଗିରିମାଳା ଏବଂ ସୁଦୂରବାହି-ନଦୀବୃନ୍ଦ ଏହାର ସର୍ବଦର୍ଗରେ ବିରାଜମାନ । ଷୋଡ଼ଷ ଶତାବ୍ଦୀରେ ଏହି ପ୍ରଦେଶ ଅତ୍ୟନ୍ତ ସମୃଦ୍ଧିମନ୍ତ ଥିଲା । ଅନେକ ସୁଦୃଢ଼ ଦୁର୍ଗ ଏବଂ ଐଶ୍ୱର୍ଯ୍ୟଶାଳୀ ନଗର ଏହି ଦେଶମଧ୍ୟରେ ବିଦ୍ୟମାନ ଥିଲା । ଚୌରିଗଡ଼ ନାମକ ନଗର ଏହାର ରାଜଧାନୀ ଥିଲା । ଯେତେବେଳେ ସୁବିଖ୍ୟାତ ମୋଗଲସମ୍ରାଟ୍ ଆକବର ମାଳବଦେଶର ଶାସନ ନିମିତ୍ତ ଆସଫ୍‌ଖାଁ ନାମକ ସେନାପତିଙ୍କୁ ପ୍ରେରଣ କରିଥିଲେ ସେତେବେଳେ ରାଣୀ ଦୁର୍ଗାବତୀ ଗଡ଼ରାଜ୍ୟର ଅଧୀଶ୍ୱରୀ ଥିଲେ ।

ଦୁର୍ଗାବତୀ ମହୋବା ନାମକ ପ୍ରଦେଶର ଅଧିପତି ଚନ୍ଦେଲବଂଶୀୟ ରାଜା ଶାଳିବାହନଙ୍କର ଦୁହିତା ଥିଲେ । ଗଡ଼ରାଜ୍ୟର ରାଜା ଦଲପତି ସିଂହଙ୍କ ସଙ୍ଗରେ ତାଙ୍କର ପରିଣୟ ସମ୍ପାଦିତ ହୋଇଥିଲା । ରାଜା ଦଲପତି ଏକମାତ୍ର ପୁତ୍ର ବୀରନାରାୟଣର ଜନ୍ମଉତ୍ତରେ ମାନବଲୀଳା ସମ୍ବରଣ କରିଥିଲେ । ସୁତରାଂ ଦୁର୍ଗାବତୀଙ୍କୁ ରାଜ୍ୟଭାର ସ୍ୱହସ୍ତରେ ଗ୍ରହଣ କରିବାକୁ ପଡ଼ିଥିଲା । ସେ ରାଜକାର୍ଯ୍ୟ ପରିଚାଳନାରେ ଅସାଧାରଣ ସାହସ, ସାମର୍ଥ୍ୟ ଏବଂ ପ୍ରତିଭା ପ୍ରଦର୍ଶନ କରିଥିଲେ । ଶର ଏବଂ ବନ୍ଧୁକ ଦ୍ୱାରା ଲକ୍ଷ୍ୟଭେଦ କରିବାରେ ତାଙ୍କର ବିଶେଷ ପାରଦର୍ଶିତା ଥିଲା । ବାଜବାହାଦୂର ନାମକ ମୁସଲମାନ ସେନାପତିସଙ୍ଗରେ ତାଙ୍କର ଯେତେଥର ସଂଗ୍ରାମ ହୋଇଥିଲା, ସେସବୁଥିରେ ଦୁର୍ଗାବତୀ ଜୟଲାଭ କରିଥିଲେ । ତାଙ୍କର ରଣନୈପୁଣ୍ୟ ଏବଂ ଧୀରସାହସ ଅବଲୋକନ କରି ପାର୍ଶ୍ୱବର୍ତ୍ତୀ ନରପତିମାନେ ଚକିତ ହୋଇଥିଲେ ।

ପୂର୍ବୋକ୍ତ ଆସଫ୍‌ଖାଁ ଅତ୍ୟନ୍ତ କୁଟିଳବୁଦ୍ଧି ଏବଂ ଧନଲୋଲୁପ ଥିଲା । ଦୁର୍ଗାବତୀଙ୍କର ଅପ୍ରତିହତ ପ୍ରଭାବ ଓ ସାମର୍ଥ୍ୟ ଦର୍ଶନ କରି ଏବଂ ତାଙ୍କର ଦିଗନ୍ତବିସ୍ତାରିତ ଯଶୋବୃତ୍ତାନ୍ତ ଶ୍ରବଣ କରି ସେ ପ୍ରଥମେ ତାଙ୍କ ସଙ୍ଗରେ ସଖ୍ୟଭାବ ସଂସ୍ଥାପନ କରିଥିଲା; କିନ୍ତୁ ତାହା ଉପରେ ରାଣୀଙ୍କର ବିଶ୍ୱାସ ଜନ୍ମିଲା ଉତ୍ତାରେ ସେ ସମୃଦ୍ଧିମନ୍ତ ଗଡ଼ରାଜ୍ୟକୁ କରକବଳିତ କରିବା ନିମିତ୍ତ

ସଚେଷ୍ଟ ହେଲା । ଏହି ଅଭିପ୍ରାୟରେ ସେ ଗଡ଼ରାଜ୍ୟର ସୀମାନ୍ତବର୍ତ୍ତୀ ଗ୍ରାମ ଏବଂ ନଗରମାନ ଲୁଣ୍ଠନ କରିବାକୁ ଲାଗିଲା । ଅବଶେଷରେ ଖ୍ରୀଷ୍ଟାବ୍ଦ ୧୫୬୪ ସାଲରେ ଆସଫ୍‌ଖାଁ ଛଅସହସ୍ର ଅଶ୍ୱାରୋହୀ ଓ ଦଶସହସ୍ର ପଦାତିକ ସେନା ନେଇ ଗଡ଼ମଣ୍ଡଳ ଅଭିମୁଖରେ ଆଡ଼ମ୍ବରସହକାରେ ଯାତ୍ରା କଲା । ଏହି ଆକସ୍ମିକ ଆକ୍ରମଣବାର୍ତ୍ତା ପାଇ ସମସ୍ତ ଗଡ଼ମଣ୍ଡଳ ଆତଙ୍କରେ ଅସ୍ଥିର ହେବାକୁ ଲାଗିଲା ; କିନ୍ତୁ ଦୁର୍ଗାବତୀ ଧୀର ଏବଂ ଅପରାଜିତ ହୃଦୟରେ ଏହି ଦୁଃସନ୍ଦେଶ ଶ୍ରବଣ କଲେ । ଆସଫ୍‌ଖାଁର ଏତାଦୃଶ ଖଳପ୍ରକୃତି ବିଷୟରେ ଅନଭିଜ୍ଞ ଥିବାରୁ ସେ କିଛିମାତ୍ର ସମରସଜ୍ଜା କରି ନ ଥିଲେ । ତାଙ୍କର ସୈନ୍ୟମାନେ ଇତସ୍ତତଃ ବିକୀର୍ଣ୍ଣ ଥିଲେ । ଯାହାହେଉ ଦୁର୍ଗାବତୀ କ୍ଷଣମାତ୍ର ବିଳମ୍ବ ନ କରି ପଞ୍ଚସହସ୍ର-ପରିମିତ ସୈନ୍ୟ ସଂଗ୍ରହ କଲେ ଏବଂ ନିଜେ ଭୈରବ ରଣବେଶ ଧାରଣ କରି ମାତଙ୍ଗୋପରି ଆରୂଢ଼ ହୋଇ ଯୁଦ୍ଧାର୍ଥ ଅଗ୍ରସର ହେଲେ । ଘୋର ଯୁଦ୍ଧ ଆରମ୍ଭ ହେଲା । ରାଣୀଙ୍କର ଉତ୍ତେଜନାରେ ତାଙ୍କର ଅଳ୍ପସଂଖ୍ୟକ ସୈନ୍ୟ ସମୁତ୍ସାହିତ ହୋଇ ଶତଶତ ବିପକ୍ଷସୈନିକଙ୍କୁ ବିନାଶ କଲେ । ମୋଗଲ୍ ସେନା ମଧ୍ୟରେ ଅତିଶୟ ବିଶୃଙ୍ଖଳା ଉପସ୍ଥିତ ହେଲା । ସେମାନେ ବାହାରିବରେ ପଳାୟନ କରିବାକୁ ଲାଗିଲେ । ଗଡ଼ରାଜ୍ୟର ସୈନିକମାନେ ଭୟଙ୍କର ବେଗରେ ବିପକ୍ଷସୈନ୍ୟ ପଛରେ ପ୍ରଧାବିତ ହେଲେ । ଯଦି ସେମାନେ ଶର୍ବରୀର ଆଗମନ ଦେଖି ବିଶ୍ରାମପ୍ରାର୍ଥୀ ହୋଇ ଅନୁଧାବନକାର୍ଯ୍ୟରୁ ବିରତ ହୋଇ ନ ଥାନ୍ତେ, ତାହାହେଲେ ମୋଗଲସେନା ଆଉ କେବେହେଁ ଯୁଦ୍ଧରେ ସମ୍ମୁଖୀନ ହୋଇ ପାରି ନ ଥାନ୍ତା । ଦୁର୍ଗାବତୀ ମନରେ ପାଞ୍ଚିଥିଲେ ଯେ, ସେ କିଛିକ୍ଷଣ ବିଶ୍ରାମ କଲାଉତ୍ତାରୁ ନିଶାକାଳରେ ମୋଗଲଶିବିରକୁ ଆକ୍ରମଣ କରି ବିପକ୍ଷମାନଙ୍କୁ ସର୍ବତୋଭାବରେ ପରାଭୂତ କରିବେ ; କିନ୍ତୁ ତାଙ୍କର ସୈନ୍ୟବର୍ଗରୁ କେହି ଏ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ତହୁଁ ଦୁର୍ଗାବତୀ ଅଗତ୍ୟା ଅନୁଧାବନରୁ ନିବୃତ୍ତ ହୋଇ ସ୍ୱୀୟ ଶିବିରକୁ ବାହୁଡ଼ି ଆସିଲେ ।

ଆସଫ୍‌ଖାଁ ରାଣୀଙ୍କର ପ୍ରତ୍ୟାଗମନବାର୍ତ୍ତା ଶ୍ରବଣ କରି ହର୍ଷୋତ୍ଫୁଲ୍ଲଚିତ୍ତରେ ପୁନର୍ବାର ଯୁଦ୍ଧର ଆୟୋଜନ କରିବାକୁ ଲାଗିଲା ଏବଂ ପ୍ରଭାତ ହୋଇନ୍ତେହିଁ

ଗୋଟିଏ ଗିରିଶୃଙ୍ଗ ଅଧିକାର କରି ତହିଁରେ କମାଣ ବସାଇ ସ୍ୱକୀୟ ସେନା-ସହିତ ଯୁଦ୍ଧର ପ୍ରତୀକ୍ଷା କରିବାକୁ ଲାଗିଲା । ଏଣେ ଦୁର୍ଗାବତୀ ହସ୍ତିପୃଷ୍ଠରେ ଆରୂଢ଼ ହୋଇ ନିଜ ସୈନ୍ୟବର୍ଗସହିତ ସମରକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ଭୀଷଣ ସଂଗ୍ରାମ ଉପସ୍ଥିତ ହେଲା । ଏହା କ୍ରମାଗତ ନଅଘଣ୍ଟା କାଳ ବ୍ୟାପି-ଥିଲା । ରାଣୀଙ୍କର ଏକମାତ୍ର ପୁତ୍ର ବୀରନାରାୟଣ ରଣସ୍ଥଳରେ ଉପସ୍ଥିତ ହୋଇ ସ୍ୱୟଂ ସେନାପତିକାର୍ଯ୍ୟ କରିବାକୁ ଲାଗିଲେ । ଏହି ତରୁଣ କ୍ଷତ୍ରିୟକୁମାର ଯେଉଁ ବିକ୍ରମ, ସାହସ ଓ ରଣକୌଶଳ ସହକାରେ ଯୁଦ୍ଧ କରିଥିଲେ, ତାହା ଦର୍ଶନ କରି ଉଭୟ ପକ୍ଷ ବିସ୍ମିତ ହୋଇଗଲେ । ସେ ମୋଗଲସେନାକୁ ତିନଥର ଆକ୍ରମଣ କରି ସେମାନଙ୍କୁ ପ୍ରତିଥର ପଛକୁ ହଟାଇଦେଲେ ; ପରି-ଶେଷରେ ଅତ୍ୟନ୍ତ ଗୁରୁ ଆଘାତ ପ୍ରାପ୍ତ ହୋଇ ଭୂତଳରେ ପତିତ ହେଲେ । ରାଣୀଙ୍କର ସୈନ୍ୟବର୍ଗ କୁମାରଙ୍କ ଦୁର୍ଦ୍ଦଶା ଅବଲୋକନ କରି ହତାଶ ଏବଂ ନିରୁତ୍ସାହ ହେବାକୁ ଲାଗିଲେ ; ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ରଣକ୍ଷେତ୍ର ଛାଡ଼ି ପଳାୟନ କଲେ । ଏହି ସମୟରେ ଦୁର୍ଗାବତୀ କିପରି ଭୟଙ୍କର ଅବସ୍ଥାରେ ଅବସ୍ଥିତ ଥିଲେ, ତାହା ସହଜରେ ଅନୁମିତ ହୋଇପାରେ । ତାହାଙ୍କର ଚତୁର୍ଦ୍ଦିଗ ଭୟସଙ୍କଟସଙ୍କୁଳ ଥିଲା । ଭୀଷଣ ମୋଗଲସେନା ସମୁଦ୍ରଲହରୀପ୍ରାୟ ମାଡ଼ିଆସୁଥିଲା ; କିନ୍ତୁ ସେ ଏଥିରେ ସୁଦ୍ଧା ତ୍ରସ୍ତ ହୋଇ ନ ଥିଲେ । ଶୋକ-ସନ୍ତପ୍ତ ହୋଇ ସେ କ୍ଷଣକାଳଯାଏ କର୍ତ୍ତବ୍ୟାବଧାରଣ କରି ପାରି ନ ଥିଲେ, କିନ୍ତୁ ମୁହୂର୍ତ୍ତମଧ୍ୟରେ ତାଙ୍କର ଅଧୈର୍ଯ୍ୟ ତିରୋହିତ ହେଲା । କୁମାରଙ୍କୁ ଶିବିରକୁ ନେଇଯିବା ନିମନ୍ତେ ବିଶ୍ୱସ୍ତ ଭୃତ୍ୟମାନଙ୍କୁ ଆଦେଶ ଦେଇ ନିଜ କିଷ୍କଳିଙ୍କମାନରକ୍ଷା ନିମିତ୍ତ ଭୀଷଣ ସଂଗ୍ରାମରେ ପ୍ରବୃତ୍ତ ହେଲେ । ସେତେ-ବେଳେ ତାହାଙ୍କ ସଙ୍ଗରେ ତିନଶତ ପଦାତି ମାତ୍ର ଉପସ୍ଥିତ ଥିଲେ । ରାଣୀ ଏହି ଅଳ୍ପସଂଖ୍ୟକ ସୈନ୍ୟ ନେଇ ଯୁଦ୍ଧାର୍ଥ ଅଗ୍ରସର ହେଲେ । ତାଙ୍କର ଅପ୍ରତିହତ ତେଜ ଏବଂ ପ୍ରଭାବ ଅବଲୋକନ କରି ତାଙ୍କର ସୈନିକମାନେ ଅଭୂତପୂର୍ବ ଉତ୍ସାହ ଏବଂ ସାହସ ସହକାରେ ସଂଗ୍ରାମରେ ପ୍ରବୃତ୍ତ ହେଲେ ।

ସହସା ବିପକ୍ଷପକ୍ଷରୁ ଗୋଟିଏ ତୀକ୍ଷ୍ଣ ତୀର ଆସି ଦୁର୍ଗାବତୀଙ୍କ ବିଶାଳ

ନୟନରେ ବିଦ୍ଧ ହେଲା । ରାଣୀ ତାହାକୁ ବାହାରକରିବାର ଚେଷ୍ଟା କଲେ, କିନ୍ତୁ ତାହା ଭାଙ୍ଗିଯାଇ ଚକ୍ଷୁରେ ରହିଗଲା । କ୍ରମେ ୨ ଆଉ ଗୋଟିଏ ତୀର ରାଣୀଙ୍କର ଗ୍ରୀବାଦେଶ ଭେଦ କଲା । ଏହାକୁ ମଧ୍ୟ ସେ ସାହସପୂର୍ବକ ବାହାର କରିପକାଇଲେ । ସେ ଏହିପ୍ରକାରେ ପୁନଃ ପୁନଃ ବାଣବିଦ୍ଧ ହୋଇ ଅଚେତନ ହୋଇପଡ଼ିଲେ । ଅଧରସିଂହ ନାମକ ତାହାଙ୍କର ଜଣେ ବିଶ୍ୱସ୍ତଭୃତ୍ୟ ଥିଲା । ସଂଜ୍ଞା ଲାଭ କରି ରାଣୀ ତାହାକୁ କହିଲେ "ଦେଖ ଅଧର, ମୁଁ ସର୍ବଦା ତୁମ୍ଭଙ୍କୁ ଶ୍ରଦ୍ଧା ଏବଂ ବିଶ୍ୱାସ କରିଅଛି ; ମୋହର ଏହି ଆଶା ଯେ ତୁମ୍ଭେ ମୋତେ ଏପରି ଦୁର୍ଦ୍ଦିବସରେ ଶତ୍ରୁର ଅପବିତ୍ର ହସ୍ତରେ ପତିତ ହେବାକୁ ଦେବ ନାହିଁ ।" ଏହା କହି ଉକ୍ତ କର୍ମଚାରୀର ଶାଣିତ କୃପାଣପ୍ରତି ସତୃଷ୍ଣନୟନରେ ଅନାଇଁ ରହିଲେ । ରାଣୀଙ୍କର ପ୍ରାଣବିନାଶ କରିବା ନିମିତ୍ତ ଅଧରସିଂହର ହସ୍ତ ଚଳିଲା ନାହିଁ । ସେ ଆକୁଳ ହୋଇ କ୍ରନ୍ଦନ କରିବାକୁ ଲାଗିଲା ଏବଂ ରଣଭୂମିରୁ ପଳାଇବା ପାଇଁ ବାରମ୍ୱାର ପ୍ରାର୍ଥନା କଲା । ଦୁର୍ଗାବତୀ ଘୃଣିତ ଶତ୍ରୁସମକ୍ଷରେ ପୃଷ୍ଠଭଙ୍ଗ ଦେବାକୁ ସମ୍ମତ ହେଲେ ନାହିଁ । ସେ କହିଲେ "ମୁଁ କି ଛାର ଏହି ଜୀବନଲାଗି ପବିତ୍ର କ୍ଷତ୍ରିୟଧର୍ମକୁ କଳଙ୍କିତ କରିବି ?" ଏହା କହି ଦୁର୍ଗାବତୀ ସ୍ୱୀୟ ହସ୍ତରେ ନିଜ ହୃଦୟରେ ତୀକ୍ଷ୍ଣ ଛୁରିକାଘାତ କରି ମାନବଲୀଳା ସମ୍ୱରଣ କଲେ । ତାହାଙ୍କର ମୃତ୍ୟୁସମୟରେ ସେହି ରକ୍ତପ୍ଲାବିତ ସମରକ୍ଷେତ୍ରରେ ତାହାଙ୍କର ଛଅଜଣ ମାତ୍ର ସୈନିକ ଦଣ୍ଡାୟମାନ ଥିଲେ । ସେମାନେ ଜଣେ ନାରୀର ଏପରି ବୀରଧର୍ମାନୁରାଗ ସନ୍ଦର୍ଶନ କରି ସମସ୍ତ ଭୟ ମନରୁ ବିଦୂରିତ କଲେ ଏବଂ ଅତୁଲନୀୟ ସାହସରେ ଉନ୍ମତ୍ତ ହେଲେ । ଅବଶେଷରେ ସେମାନେ ବହୁସଂଖ୍ୟକ ଯବନସୈନିକଙ୍କର ପ୍ରାଣ ସଂହାର କରି ସ୍ୱଦେଶର ନାମରେ ସଂଗ୍ରାମଭୂମିରେ ନିଜ ନିଜ ଜୀବନ ବିସର୍ଜନ କଲେ ।

## ପ୍ରଶ୍ନ

୧ । ଗଡ଼ମଣ୍ଡଳ ଜନପଦର ଅବସ୍ଥିତି ନିର୍ଦ୍ଦେଶ କର ।

୨ । ଦୁର୍ଗାବତୀଙ୍କର ଚରିତ୍ର ବର୍ଣ୍ଣନ କର ।

୩ । ଅଭୂତପୂର୍ବ ସାହସ, ଅପରାଜିତ ହୃଦୟ, ଶାଣିତ କୃପାଣ ପ୍ରଭୃତି ସହିଷ୍ଣୁତାକୁ ନେଇ ଅନାଇଲେ, ସମରବିଳାସୀନୀ ମନସ୍ୱିନୀ ବୀର-ବାଳାମାନଙ୍କର ବଳାସ୍ତକ୍ଷେତ୍ର, ସୁଦୂରବାହିନପାଶ୍ଚିମ୍ୟ, ଦିଗନ୍ତ-ବିସ୍ତାରିତ ଯଶୋବୃତ୍ତାନ୍ତ ଏଗୁଡ଼ିକର ସରଳ ବ୍ୟାଖ୍ୟା କର ।

୪ । ଲୋଲୁପ, ଆରୂଢ଼, ତପୋହିତ, ସମ୍ମତ ନୈପୁଣ୍ୟ, ଭୈରବ, ମନସ୍ୱିନୀ ଏହି ପଦମାନଙ୍କର ବ୍ୟୁତ୍ପତ୍ତି ବୋଲ ।

## ଶୋଭା

( କେଦାର ଚକ୍ରକେଳି ବୃତ୍ତ )

କେ ଦେଖିବ ଦେଖ  ମେଲି ନୟନ
ଶୋଭାର ଭବନ  ଏହି ଭୁବନ ।

ଚୌଦିଗେ ବିସ୍ତାରି  ବିମଳ ପ୍ରଭା
ବସିଛି ଶୋଭାର  ଉତ୍ସବସଭା ।

ଅନନ୍ତ ଗଗନେ  ସଦା ବିହରି
ବିଳସଇ ଶୋଭା  ଦିବା ଶର୍ବରୀ

ଦିବସ ଯାମିନୀ  ଗଗନ-ପଟେ
କେତେ ନବ ନବ  ଶୋଭା ପ୍ରକଟେ ।

ଅରୁଣ କିରଣ—  ତୁଳିକା ଧରି ;
କେତେ ରଙ୍ଗେ ରଙ୍ଗେ  ପ୍ରାଚୀନଗରୀ ।

ପୁଣି ସାୟଂକାଳେ  ସେ ଶୋଭାରାଣୀ,
ବାରୁଣୀକି କରି  ତା ରାଜଧାନୀ,

ସ୍ୱର୍ଣ୍ଣମୟ ଦିବ୍ୟ  ବେହରଣରେ,
ବିରାଜଇ କ୍ଷଣେ  ହରଷଭରେ ।

ଦିବସେ ଉଜ୍ଜ୍ୱଳ ଜ୍ୟୋତି-ବସନେ
ଶୋଭାଦେବୀ ବସି ଗଗନାସନେ,
ଆଲୋକର ଧାରା ଧରା ଶରୀରେ
ଢାଳୁଥାଏ ସତି ପ୍ରେମ ବନ୍ଧରେ ।
ସେ ଆଲୋକ-ସୁଧା ଲଭିବ ସୁଧା
ଦିଶେ ଶୋଭାମୟୀ ସ୍ୱଭାବ-ଶୁଦ୍ଧା ।
ଅନ୍ତରୀକ୍ଷେ ମେଘ ସେ ଜ୍ୟୋତି ପାଇ,
କ୍ଷଣେ କ୍ଷଣେ ନବ ରୂପ ଦେଖାଇ,
ବିଜୁଳି ପତାକା ଉଡ଼ାଇ ରଙ୍ଗେ,
ଭ୍ରମେ ଚଉଦିଗେ ପବନ ସଙ୍ଗେ ।
ସେ ଆଲୋକ ପାଇ ମହାସମୁଦ୍ର;
ବିପୁଳ ଗଭୀର ସୁନ୍ଦର ରୁଦ୍ର,
ଉଜ୍ଜ୍ୱଳ ଚଞ୍ଚଳ ଲହରୀ-ଛନ୍ଦେ
ତାଳେ ତାଳେ ନାଚି ଗାଏ ଆନନ୍ଦେ ।
ସେ ଆଲୋକ ପଶି ଗହନ ବନେ,
ତରୁ ଲତା ସଙ୍ଗେ ଖେଳେ ଗୋପନେ ।
ସୁନ୍ଦର ପଲ୍ଲବ କୁସୁମ ଫଳେ;
ହରଷେ ମଣ୍ଡଇ ଏ ଭୂମଣ୍ଡଳେ
କଠିନ ପାଷାଣ ଗିରି-ହୃଦୟ
ସେ ଜ୍ୟୋତିପରଶେ ମାଧୁରମୟ ।
ତା ଦେହେ ବିକାଶେ ସହସ୍ର ଛବି,
ଯାର ଦରଶନେ ମୋହିତ କବି ।
ଗିରିଦେହୁଁ ଝରି ଶୁଭ୍ର ନିର୍ଝର,
ନଦୀସଙ୍ଗେ ମିଳି ଗମେ ସାଗର ।

ସେ ଜ୍ୟୋତି ଆଣି — ରଶ୍ମୀଜାଲ
ଫୁଟାଏ କୁସୁମ— ରାଣୀ କମଳ ।
ଶୋଭାରାଣୀର ସେ — ଜ୍ୟୋତି-ସଞ୍ଚାରେ
ବହଇ ଜୀବନ— ସ୍ରୋତ ସଂସାରେ
ପଶୁ ବିହଙ୍ଗମ— କୀଟ ପତଙ୍ଗେ
ସବେ ମତ୍ତ ଶୋଭା— ରସ-ପ୍ରସଙ୍ଗେ ।

ନର ନାରୀ ଶୋଭା— ସମୁଦ୍ର ଜଳେ
ସନ୍ତରନ୍ତି ମୀନ— ସମ ବହ୍ଳେ ।

ପୁରୁଷ-ମୂରତି ନାରୀ-ପ୍ରତିମା
ବିକାଶଇ କବା ଶୋଭା-ମହିମା ।

ପ୍ରଦୋଷରେ ଶୋଭା— ରାଣୀର ମାୟା
ଆଲୋକ ସଙ୍ଗତେ ତାମସୀ ଛାୟା
ମିଳାଏ କୌତୁକେ କବାହସୁଛଳେ,
ସେ ଗୂଢ଼ ରହସ୍ୟ ବଚନ ବଳେ ।
ରଜନୀରେ ଶୋଭା— ଦେବୀ ଗମ୍ଭୀରେ
ନଭେ ଶାନ୍ତମନ୍ତ୍ର ଉଚ୍ଚାର ଧୀରେ,
ନକ୍ଷତ୍ରଖଚିତ ନୀଳ ଦୁକୂଳେ
ଆବରି ଦିଗଙ୍ଗ, ଶ୍ରୀ ଅଙ୍ଗମୂଳେ
ଧୂଳଇ ପୁଲକେ ଭକତଭରେ,
ଅଶେଷ ଆଶିଷ ଲଭେ ହୃଦରେ ।
ଅଥବା ବିମଳ କୌମୁଦୀସ୍ରୋତେ
ଭୁବନମୋହିନୀ ପ୍ଳାବି ଜଗତେ,
ଚରାଚରେ କରି ଶୁଭ୍ରସୁନ୍ଦର,
ପୂରେ ମହାନନ୍ଦେ ସର୍ବ-ଅନ୍ତର ।

କୁଳେ କୂଳେ ନଭେ ଗଭ-କାନନେ,
ସମୁଦ୍ରେ ସରିତେ ଜନ-ସଦନେ,
ବସନ୍ତେ ନିଦାଘେ ବର୍ଷା ଶରତେ,
ହେମନ୍ତେ ଶିଶିରେ ବିବିଧମତେ,
ବିଜେ ଶୋଭାରାଣୀ ରୂପବିଭବେ
ସ୍ଥିର ସୌଦାମିନୀ— ପ୍ରାୟେ ଏ ଭବେ ।
ସେ ବିଭବ ଦେଖି କୋଟି ହୃଦୟ,
ପୁଲକେ ହୁଅଇ ସଙ୍ଗୀତମୟ ।
ପ୍ରଭାତେ ପ୍ରଦୋଷେ ସଙ୍ଗୀତ ତାନ,
ଦିବା ବିଭାବରୀ ବନ୍ଦନା ଗାନ,
ଉଚ୍ଛୁଳି ଉଠୁଛି ତାଳ ଝଙ୍କାରେ,
ଶୋଭାରାଣୀଙ୍କର [illegible] ସଭାରେ ।
ବାଳକ ବାଳିକା ଆସ ସରବେ,
ଭୁବନ-ନନ୍ଦିନୀ ଶୋଭା-ବିଭବେ,
ଦରଶନ କରି ପ୍ରେମନୟନେ
ସଫଳ କର ହେ ନିଜ ଜୀବନେ ।
ସେ ମହାସଭାରେ ବସି ଆନନ୍ଦେ
ଗାଅ ହେ ବନ୍ଦନା ମଧୁର ଛନ୍ଦେ ।

## ପ୍ରଶ୍ନ

ଶୋଭାର ଉତ୍ସବ-ସଭା, କିରଣ ଗୁଳିକା, ପ୍ରାଚୀ-ନଗରୀ, ସ୍ୱର୍ଣ୍ଣମୟ ଦିବ୍ୟ ବେହରଣରେ, ଶୋଭା-ରସ-ପ୍ରସଙ୍ଗେ, ଶୋଭାରାଣୀର ମାୟା, ବିପୁଳଗଭୀରସୁନ୍ଦରରୁଦ୍ରମହାସମୁଦ୍ର, ଉଚ୍ଛଳଚଞ୍ଚଳ-ଲହରୀ-ଛନ୍ଦେ, ଏହି ବାକ୍ୟାଂଶମାନଙ୍କର ଅର୍ଥ ବ୍ୟାଖ୍ୟା କର ।

୨ । ପ୍ରାତଃକାଳର ଶୋଭା, ସାୟଂକାଳର ଶୋଭା, ମେଘର ଶୋଭା, ସମୁଦ୍ରର ଶୋଭା, ପର୍ବତର ଶୋଭା ଏଗୁଡ଼ିକର ବର୍ଣ୍ଣନା ଆବୃତ୍ତି କର ।

୩ । ଚକ୍ରକେଳି ବୃତ୍ତର ଲକ୍ଷଣ ନିର୍ଦ୍ଦେଶ କର ।

୪ । ସ୍ୱଭାବ, ବସୁଧା, ପୁରୁଷ, ତାମସୀ, ରହସ୍ୟ, ପ୍ରଭାତ, ଏ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ବୋଲ ।

୫ । ଏ କବିତାରେ ଥିବା ରୂପକ ଓ ଉପମା ଅଳଙ୍କାରମାନ ଦେଖାଇ-ଦିଅ ।

୬ । "ଗିରଦେହିଁ ଝର ଶୁଭ୍ର ନିର୍ଝର" ଏହି ଚରଣରୁ ଆରମ୍ଭ କରି ଶେଷ ପର୍ଯ୍ୟନ୍ତ କବିତାଂଶକୁ ଗଦ୍ୟରେ ପରିଣତ କର ।

# ସର୍ ଆଇଜାକ୍ ନିଉଟନ୍

ଯେଉଁ ବର୍ଷ ଇଟାଲୀର ସୁବିଖ୍ୟାତ ଜ୍ୟୋତିର୍ବେତ୍ତା ଗାଲିଲିଓ ମାନବଲୀଳା ସମ୍ବରଣ କଲେ, ସେହିବର୍ଷ ଆଇଜାକ୍ ନିଉଟନ୍ ପୃଥିବୀରେ ଆବିର୍ଭୂତ ହେଲେ । ନିଉଟନ୍ ଖ୍ରୀଷ୍ଟାବ୍ଦ ୧୬୪୨ ସାଲର ଡିସେମ୍ବର ମାସରେ ଇଂଲଣ୍ଡର ଅନ୍ତଃପାତୀ ଉଲ୍‌ସ୍ଥର୍ପ ନାମକ ଗ୍ରାମରେ ଜନ୍ମପରିଗ୍ରହ କରିଥିଲେ । ଏହି ମହାତ୍ମାଙ୍କ ବିଷୟରେ ଜଣେ ପ୍ରଧାନ ଇଂଲଣ୍ଡୀୟ କବି ନିମ୍ନଲିଖିତରୂପେ ଲେଖିଅଛନ୍ତି । "ପ୍ରକୃତି ଏବଂ ତାହାର ନିୟମଚୟ ଘୋର ଅନ୍ଧକାରରେ ଆବୃତ ଥିଲା । 'ନିଉଟନ୍ ଆବିର୍ଭୂତ ହେଉନ୍ତୁ' ଏହି ବାଣୀ ଈଶ୍ୱର ଉଚ୍ଚାରଣ କଲେ, ତଦନନ୍ତର ସମସ୍ତ ବିଶ୍ୱତତ୍ତ୍ୱ ଉଜ୍ଜ୍ୱଳରୂପେ ପ୍ରତିଭାତ ହେଲା ।" ବାସ୍ତବରେ ମହାନୁଭାବ ନିଉଟନ୍ ଯେଉଁ ମହାତତ୍ତ୍ୱମାନଙ୍କ ଆବିଷ୍କ୍ରିୟା ଓ ପ୍ରମାଣ କରି-

ଅଛନ୍ତି, ତାହାଙ୍କଦ୍ୱାରା ଜଗତର ଅଶେଷ ଉପକାର ସଂସାଧିତ ହୋଇଅଛି ଏବଂ ବିଜ୍ଞାନର ପ୍ରଭୂତ ଉନ୍ନତି ସମ୍ପାଦିତ ହେଉଅଛି ।

ଉକ୍ତ ଉଲ୍‌ସ୍ଥର୍ପ ଗ୍ରାମରେ ନିଉଟନଙ୍କର ପିତା ତାଙ୍କର ସ୍ୱଳ୍ପ ପୈତୃକ ଭୂମିର କର୍ଷଣଦ୍ୱାରା ବୃତ୍ତିସମ୍ପାଦନ କରୁଥିଲେ । କିଶୋରାବସ୍ଥାରେ ପିତୃହୀନ ହେବାରୁ ନିଉଟନଙ୍କୁ ସ୍ୱୀୟ ଜନନୀ ସମୀପରେ ପ୍ରାଥମିକ ଶିକ୍ଷା ଗ୍ରହଣ କରିବାକୁ ହୋଇଥିଲା । ଦ୍ୱାଦଶବର୍ଷ ବୟଃକ୍ରମକାଳରେ ନିଉଟନ୍ ଗ୍ରାନ୍ଥାମନଗର ପାଠ-



ସ୍ୱର୍ ଆଇଜାକ୍ ନିଉଟନ୍

ଶାଳାକୁ ପ୍ରେରିତ ହେଲେ । ସେଠାରେ ଯନ୍ତ୍ରାଦି-ନିର୍ମାଣ ବିଷୟରେ ବିଚିତ୍ର ଶିଳ୍ପକୌଶଳ ପ୍ରକାଶ କରି ଅସାଧାରଣ ଧୀମତ୍ତାର ପରିଚୟ ପ୍ରଦାନ କରି-ଥିଲେ । ଯେତେବେଳେ ପାଠଶାଳାର ଛାତ୍ରମାନେ ଅବସର ପାଇ ନାନା କ୍ରୀଡ଼ା କରୁଥାନ୍ତି, ନିଉଟନ୍ ସେହି ସମୟରେ ବିବିଧ ଯନ୍ତ୍ରର ପ୍ରତିରୂପନିର୍ମାଣରେ ଅଭିନିବିଷ୍ଟ ଥାନ୍ତି । ସେ ଏହି ସମୟରେ ଗୋଟିଏ ଜଳ-ଘଟିକା ନିର୍ମାଣ

କରିଥିଲେ । ସେହି ଘଟିକାର ଶଙ୍କୁଦଣ୍ଡ ଗୋଟିଏ ବାକ୍ସମଧ୍ୟରୁ ନିପତିତ ଜଳବିନ୍ଦୁର ଆଘାତଦ୍ୱାରା ପରିଚାଳିତ ହେଉଥିଲା ଏବଂ ସେଥିରେ ସମୟଜ୍ଞାପନାର୍ଥ ଗୋଟିଏ ଅଙ୍କିତ ଫଳକ ସନ୍ନିବିଷ୍ଟ ଥିଲା ।

ପ୍ରୋକ୍ତ ପାଠଶାଳାରୁ ବହିର୍ଗତ ହେଲାଉତ୍ତାରେ ନିଉଟନଙ୍କୁ କୃଷକ-ବ୍ୟବସାୟ ଅବଲମ୍ବନ କରିବାକୁ ହେବ ବୋଲି ତାଙ୍କର ଅଭିଭାବକମାନେ ସ୍ଥିର କରିଥିଲେ, ମାତ୍ର ଏପରି ଶାରୀରିକଶ୍ରମସାଧ୍ୟ କାର୍ଯ୍ୟ ନିମିତ୍ତ ସେ ଯେ ସର୍ବଥା ଅନୁପଯୁକ୍ତ ଥିଲେ ଏହା ଶୀଘ୍ର ପ୍ରତିପନ୍ନ ହୋଇଥିଲା । ଯେଉଁ ସମୟରେ କୃଷିସମ୍ବନ୍ଧୀୟ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବା ତାହାଙ୍କର ଉଚିତ ଥିଲା; ସେତେବେଳେ ନିଉଟନ୍ ନିଶ୍ଚିନ୍ତମନରେ ତରୁତଳରେ ଉପବିଷ୍ଟ ହୋଇ ଗାଢ଼ ଅଧ୍ୟୟନରେ ନିଯୁକ୍ତ ଥାନ୍ତି ଏବଂ କୃଷିଲବ୍ଧ ଦ୍ରବ୍ୟମାନ ବିକ୍ରୟ କରିବାକୁ ପ୍ରେରିତ ହେଲେ, ସେ ଉକ୍ତ କାର୍ଯ୍ୟର ଭାର ଜଣେ ଭୃତ୍ୟଠାରେ ଅର୍ପଣ କରି, ନିଜେ ତୃଣରାଶିଉପରେ ଆସୀନ ହୋଇ ଗଣିତବିଷୟକ ସମସ୍ୟା ସାଧନରେ ଅଭିନିବିଷ୍ଟ ଥାନ୍ତି । ତାହାଙ୍କର ଜନନୀ ପୁତ୍ରର ଏପରି ଅଲୌକିକ ବିଦ୍ୟାନୁରାଗ ସନ୍ଦର୍ଶନ କରି ତାହାଙ୍କୁ ୧୬୬୦ ଖ୍ରୀଷ୍ଟାବ୍ଦର ଜୁନ ମାସରେ କେମ୍ବ୍ରିଜ୍-ନଗରସ୍ଥ ବିଶ୍ୱବିଦ୍ୟାଳୟକୁ ପ୍ରେରଣ କଲେ ।

ନିଉଟନ୍ ସ୍ୱୀୟ ଅଧ୍ୟବସାୟ, ପ୍ରତିଭା, ସୁଶୀଳତା ଏବଂ ନିରହଙ୍କାର ସ୍ୱଭାବ ଦ୍ୱାରା ଅଧ୍ୟାପକ ଏବଂ ସହାଧ୍ୟାୟୀମାନଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ । ବିଶେଷତଃ ସୁବିଖ୍ୟାତ ଧର୍ମୋପଦେଷ୍ଟା ଏବଂ ଗଣିତଜ୍ଞ ଆଇଜାକ ବାରୋଙ୍କ ସହିତ ତାଙ୍କର ଅତ୍ୟନ୍ତ ପ୍ରଣୟ ହୋଇଥିଲା । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ପ୍ରବିଷ୍ଟ ହୋଇ ସେ ପ୍ରଥମେ ସଣ୍ଡର୍ସନରଚିତ ନ୍ୟାୟଶାସ୍ତ୍ର ଏବଂ କେପ୍ଲରପ୍ରଣୀତ ଦୃଷ୍ଟିବିଜ୍ଞାନ ଏବଂ ଡେକାର୍ଟରଚିତ ରେଖାଗଣିତ ଅଧ୍ୟୟନ କରିଥିଲେ । ସେ ଇଉକ୍ଲିଡଙ୍କର ଜ୍ୟାମିତିଗ୍ରନ୍ଥ ଏହି ସମୟରେ ଉତ୍ତମରୂପେ ପାଠ କରି ପାରି ନ ଥିଲେ ବୋଲି ଉତ୍ତରକାଳରେ ଅତ୍ୟନ୍ତ ଦୁଃଖ ପ୍ରକାଶ କରିଥିଲେ ।

କେମ୍ବ୍ରିଜରେ ଅଧ୍ୟୟନ କରିବା ସମୟରେ ନିଉଟନ୍ ପଦାର୍ଥବିଜ୍ଞାନର

ଅନ୍ତର୍ଗତ ଆଲୋକପ୍ରକରଣକୁ ପ୍ରଗାଢ଼ ଅଭିନିବେଶସହକାରେ ପର୍ଯ୍ୟାଲୋଚନା କରିଥିଲେ । ଫ୍ରାନ୍ସର ସୁବିଖ୍ୟାତ ଗଣିତଜ୍ଞ ଏବଂ ଦାର୍ଶନିକ ଡେକାର୍ଟ ଏଥିପୂର୍ବେ ଏହି ସିଦ୍ଧାନ୍ତ କରିଥିଲେ ଯେ ଅନ୍ତରୀକ୍ଷବ୍ୟାପୀ ସ୍ଥିତିସ୍ଥାପକ ସୂକ୍ଷ୍ମପଦାର୍ଥବିଶେଷର ସଞ୍ଚାଳନଦ୍ୱାରା ଆଲୋକର ଉତ୍ପତ୍ତି ହୁଏ । ନିଉଟନ୍ ଏହି ମତ ଖଣ୍ଡନ କଲେ । ଗୋଟିଏ ତମସାବୃତ ପ୍ରକୋଷ୍ଠରେ ପ୍ରବେଶ କରି ଖଣ୍ଡେ ବହୁକୋଣବିଶିଷ୍ଟ କାଚଉପରେ କବାଟର କ୍ଷୁଦ୍ରଛିଦ୍ରଦ୍ୱାରା ସୌରକିରଣ ନିପାତିତ କଲେ ଏବଂ ଏହି ପରୀକ୍ଷାଦ୍ୱାରା ଦେଖିଲେ ଯେ ଆଲୋକ କାଚର ଭିତରଦେଇ ଗମନ କରି ଏପ୍ରକାର ବକ୍ର ଓ ଭଗ୍ନ ହୋଇଅଛି ଯେ ଉକ୍ତ ପ୍ରକୋଷ୍ଠର ଭିତ୍ତି ଉପରେ ସପ୍ତବିଧ ବିଭିନ୍ନ ବର୍ଣ୍ଣ ପ୍ରତିଫଳିତ ହୋଇଅଛି । ଅବଶେଷରେ ସେ ବିବିଧ ପରୀକ୍ଷାଦ୍ୱାରା ଆଲୋକର ପ୍ରକୃତ ତତ୍ତ୍ୱ ଅବଧାରଣ କଲେ । ତାହା ଏହି ଯେ ଆଲୋକ ଅଣୁରୂପେ ବିଭାଜ୍ୟ କିରଣମାନଙ୍କ ସମଷ୍ଟି ଅଟେ, ଏବଂ ଶୁକ୍ଳ ଆଲୋକର ପ୍ରତ୍ୟେକ କିରଣକୁ ବିଶ୍ଳେଷଣ କଲେ ଦେଖାଯିବ ଯେ ଏହା ରକ୍ତ, ପୀତ, ନୀଳ ଏହି ତିନୋଟି ବିଭିନ୍ନବର୍ଣ୍ଣ ଭଗ୍ନର ମୌଳିକ କିରଣର ସମବାୟ ଅଟେ । ଏହି ସୁପ୍ରସିଦ୍ଧ ଆବିଷ୍କ୍ରିୟାକୁ ଦୃଷ୍ଟିବିଜ୍ଞାନଶାସ୍ତ୍ରର ମୂଳଭିତ୍ତି ବୋଲିବାକୁ ହେବ ।

୧୬୬୫ ଖ୍ରୀଷ୍ଟାବ୍ଦରେ କେମ୍ବ୍ରିଜ ନଗରରେ ଘୋର ମାରୀଭୟ ଉପସ୍ଥିତ ହେବାରୁ ବିଶ୍ୱବିଦ୍ୟାଳୟର ଅଧ୍ୟାପକବର୍ଗ ଅନ୍ୟାନ୍ୟ ସ୍ଥାନକୁ ପ୍ରସ୍ଥାନ କଲେ । ନିଉଟନ୍ ଏହି ସମୟରେ ପ୍ରାଣରକ୍ଷାର୍ଥ ସ୍ୱୀୟ ଗ୍ରାମକୁ ଗମନ କରିଥିଲେ । ସେଠାରେ ସାଧାରଣ ପୁସ୍ତକାଳୟର ଅଭାବ ଏବଂ ଶାସ୍ତ୍ରଜ୍ଞ ପଣ୍ଡିତମାନଙ୍କର ବିରଳତା ଯୋଗୁଁ ତାଙ୍କୁ ପ୍ରଗାଢ଼ ଅଧ୍ୟୟନ ଏବଂ ଶାସ୍ତ୍ରାଳାପଜନିତ ସୁଖରୁ ବଞ୍ଚିତ ହେବାକୁ ହୋଇଥିଲା ; ତଥାପି ସେ ଏହି ସମୟରେ ମାଧ୍ୟାକର୍ଷଣରୂପ ସୁମହତ୍ ତତ୍ତ୍ୱ ପ୍ରକାଶ କରି ବୈଜ୍ଞାନିକ ଜଗତରେ ମହାବିପ୍ଳବ ସଂଘଟିତ କଲେ । ଦିନେ ସେ ନିଜ ଉଦ୍ୟାନମଧ୍ୟରେ ବସିଅଛନ୍ତି ଏମନ୍ତ ସମୟରେ ଏକ ଆପ୍ପଲବୃକ୍ଷରୁ ଗୋଟିଏ ଫଳ ଭୂମିରେ ପତିତ ହେଲା । ସେ ତାହା ଦେଖି ପଦାର୍ଥମାନଙ୍କର ପତନବିଷୟକ ସାଧାରଣ ନିୟମ ଆଲୋଚନା କରିବାକୁ ଲାଗିଲେ । ଅନନ୍ତର

ଏହି ବିଷୟକୁ ପୁନର୍ବାର ଆଲୋଚନା କରି ଅବଧାରଣ କଲେ ଯେ, ଯେଉଁ କାରଣରୁ ଆତଫଳ ଭୂତଳରେ ପଡ଼ୁଅଛି, ସେହି କାରଣରୁ ଗ୍ରହମାନେ ସ୍ୱସ୍ୱ କକ୍ଷରେ ଅବସ୍ଥାପିତ ଅଛନ୍ତି ଏବଂ ସେହି କାରଣ ଜ୍ୟୋତିଷ୍କମାନଙ୍କର ଗତିର ନିୟାମକ ଅଟେ । ଏହି ପ୍ରକାରେ ପଦାର୍ଥମାନଙ୍କର ଆକର୍ଷଣତତ୍ତ୍ୱ ଏବଂ ଗୁରୁତ୍ୱର ନିୟମ ଆବିଷ୍କୃତ ହେଲା । ଏହି ସାଧାରଣ ନିୟମର ପ୍ରକାଶଦ୍ୱାରା ଜ୍ୟୋତିର୍ବିଦ୍ୟାର ପ୍ରଭୂତ ଉନ୍ନତି ସାଧିତ ହୋଇଅଛି ।

ଅନନ୍ତର ୧୬୬୯ ଖ୍ରୀଷ୍ଟାବ୍ଦରେ ତାହାଙ୍କର ସୁବିଖ୍ୟାତ ବନ୍ଧୁ ଡାକ୍ତର ବାରୋ ଗଣିତଶାସ୍ତ୍ରର ଅଧ୍ୟାପକପଦ ପରିତ୍ୟାଗ କରନ୍ତେ ନିଉଟନ୍ ତହିଁରେ ନିଯୁକ୍ତ ହେଲେ । ଦୃଷ୍ଟିବିଜ୍ଞାନ ବିଷୟରେ ସେ ଯେଉଁ ମହା ତତ୍ତ୍ୱମାନ ଆବିଷ୍କାର କରିଥିଲେ ତାହାକୁ ଅବଲମ୍ବନ କରି ନିଉଟନ୍ ପ୍ରଥମତଃ କିଛିକାଳ ଅଧ୍ୟାୟୀମାନଙ୍କୁ ଶିକ୍ଷା ଦେଇଥିଲେ । ଆଲୋକ ଏବଂ ବର୍ଣ୍ଣ-ବିଷୟକ ଅଭିନବ ତତ୍ତ୍ୱ ସେ ଏପରି ବିଶଦରୂପେ ବ୍ୟାଖ୍ୟା କରିଥିଲେ ଯେ ତାହାଙ୍କର ଶ୍ରୋତୃବର୍ଗ ପରମ ପରିତୋଷ ଲାଭ କରିଥିଲେ । ୧୬୭୧ ସାଲରେ ନିଉଟନ୍ ରୟଲସୋସାଇଟି ନାମକ ସୁପ୍ରସିଦ୍ଧ ବୈଜ୍ଞାନିକସମାଜର ସଭ୍ୟଶ୍ରେଣୀରେ ଭୁକ୍ତ ହୋଇଥିଲେ । କିନ୍ତୁ ଅଧ୍ୟାପକପଦର ବେତନ ବ୍ୟତିରେକେ ତାହାଙ୍କର ଅନ୍ୟପ୍ରକାର ଅର୍ଥୋପାୟ ନ ଥିବାରୁ ସେ ସଭାର ବ୍ୟୟନିର୍ବାହାର୍ଥ ନିର୍ଦ୍ଦିଷ୍ଟ ଅର୍ଥସାହାଯ୍ୟ କରିବାକୁ ଅସମର୍ଥ ହୋଇଥିଲେ । ତାହାଙ୍କର କିଛିମାତ୍ର ବିଳାସବାସନା ନ ଥିଲା । ପ୍ରୟୋଜନୀୟ ପୁସ୍ତକ ଓ ବୈଜ୍ଞାନିକ ଯନ୍ତ୍ରାଦିର କ୍ରୟସମ୍ପାଦନ ଏବଂ ଦରିଦ୍ରର ଦୁଃଖାପନୋଦନ, ଏହି ଉଭୟ କାର୍ଯ୍ୟ ଅନୁଷ୍ଠିତ ହେଲେ ସେ ଆପଣାକୁ ପରମସୁଖୀ ମଣୁଥିଲେ, ଅନ୍ୟ ଆମୋଦସ୍ପୃହା ତାଙ୍କର ହୃଦୟରେ ସ୍ଥାନ ପାଉ ନ ଥିଲା । ୧୬୮୭ ଖ୍ରୀଷ୍ଟାବ୍ଦରେ ସେ ପ୍ରିନ୍ସିପିଆ ନାମକ ତାଙ୍କର ସୁପ୍ରସିଦ୍ଧ ଗ୍ରନ୍ଥକୁ ରଚନା କଲେ । ଏହି ଗ୍ରନ୍ଥରେ ଗଣିତସୂତ୍ର ଅବଲମ୍ବନ କରି ପଦାର୍ଥ-ବିଜ୍ଞାନର ତତ୍ତ୍ୱମାନ ବିବୃତ ହୋଇଅଛି । ଯେଉଁ ୧୬୮୮ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡରେ ଗୋଟିଏ ପ୍ରକାଣ୍ଡ ରାଷ୍ଟ୍ରବିପ୍ଳବ ସଂଘଟିତ ହୋଇଥିଲା, ନିଉଟନ୍ ସେହି ବର୍ଷ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ପ୍ରତିଭୂପଦରେ ମନୋନୀତ ହୋଇ

ପାର୍ଲିଅମେଣ୍ଟ ମହାସଭାକୁ ପ୍ରେରିତ ହୋଇଥିଲେ । ତାହାଙ୍କର ଅସାଧାରଣ ଜ୍ଞାନର ପ୍ରଭାବରେ ସେ ଅଚିରେ ସମ୍ଭ୍ରାନ୍ତ ଏବଂ ଐଶ୍ୱର୍ଯ୍ୟଶାଳୀ ବ୍ୟକ୍ତିମାନଙ୍କ ମଣ୍ଡଳୀରେ ସମାଦୃତ ହେଲେ ଏବଂ ସେମାନଙ୍କ ଯତ୍ନରେ ସେ ମୁଦ୍ରାଶାଳାର ଅଧ୍ୟକ୍ଷପଦରେ ନିଯୁକ୍ତ ହେଲେ । ଜଟିଳ ବିଷୟର ଗବେଷଣାରେ ତାହାଙ୍କର ଅସାଧାରଣ ଧୈର୍ଯ୍ୟ ଏବଂ ନୈପୁଣ୍ୟ ଥିବାରୁ ସେ ପ୍ରୋକ୍ତ ଅଧ୍ୟକ୍ଷପଦରେ ନିଯୁକ୍ତ ହେବାପାଇଁ ସମ୍ପୂର୍ଣ୍ଣରୂପେ ଯୋଗ୍ୟ ଥିଲେ, ଏବଂ ମୃତ୍ୟୁକାଳ ପର୍ଯ୍ୟନ୍ତ ସେହି ପଦରେ ରହି ସର୍ବତ୍ର ସୁଖ୍ୟାତି ପ୍ରାପ୍ତ ହୋଇଥିଲେ । ୧୭୦୫ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡେଶ୍ୱରୀ ଆନିନାମ୍ନୀ ରାଜ୍ଞୀ ତାହାଙ୍କୁ ନାଇଟ୍ ନାମକ ମର୍ଯ୍ୟାଦାସୂଚକ ଉପାଧି ପ୍ରଦାନ କରିଥିଲେ ।

ନିଉଟନ୍ ଏପରି ଉଦାର ପ୍ରକୃତି ଥିଲେ ଯେ ସାମାଜିକ ସାମାନ୍ୟ ବ୍ୟାପାରରେ ସୁଦ୍ଧା ତାହାଙ୍କର କୌଣସି ପ୍ରକାର ଚରିତ୍ରର ତ୍ରୁଟି ଲକ୍ଷିତ ହେଉ ନ ଥିଲା । କଥୋପକଥନ ସମୟରେ କଦାପି ସେ ଆତ୍ମପ୍ରାଧାନ୍ୟ ପ୍ରଖ୍ୟାପନ କରିବାକୁ ଚେଷ୍ଟା କରୁ ନ ଥିଲେ । ସରଳାତ୍ମା, ପ୍ରଫୁଲ୍ଲଚିତ୍ତ ଏବଂ ସୌଜନ୍ୟପୂର୍ଣ୍ଣ ଥିବାରୁ ସମସ୍ତେ ତାହାଙ୍କର ସହବାସକାମନା କରୁଥିଲେ, ଏବଂ ଅନ୍ୟସହିତ ଆଳାପ କରିବାରେ ତାହାଙ୍କର ମହାର୍ଘ ସମୟ ଅପଚିତ ହେଲେହେଁ ସେ କଖିନ୍ନାଏ ବିରକ୍ତି ପ୍ରଦର୍ଶନ କରୁ ନ ଥିଲେ । କିନ୍ତୁ ଅତି ପ୍ରତ୍ୟୁଷରେ ଉଠିବା ଅଭ୍ୟାସ ଏବଂ ସମୟର ନିୟମିତ ବିଭାଗ ଅବଲମ୍ବନ କରିବାରୁ ଅଧ୍ୟୟନ ଓ ରଚନା ନିମିତ୍ତ ତାହାଙ୍କୁ ପ୍ରଭୂତ ଅବକାଶ ମିଳୁଥିଲା ଏବଂ ସେ ଅବସର ପାଇଲାକ୍ଷଣି ପୁସ୍ତକରଚନା ଅଥବା ଗ୍ରନ୍ଥାଧ୍ୟୟନ କାର୍ଯ୍ୟରେ ଆପଣାକୁ ନିୟୋଜିତ କରୁଥିଲେ । ନିଉଟନ୍ ଦାନଶୀଳ ଏବଂ ଧାର୍ମିକ ଥିଲେ । ଅତ୍ୟନ୍ତ ବୃଦ୍ଧବୟସରେ ସୁଦ୍ଧା ତାହାଙ୍କର ପ୍ରତିଭା ନିଷ୍ପ୍ରଭ ହୋଇ ନ ଥିଲା । ତାହାଙ୍କର ପ୍ରଫୁଲ୍ଲସ୍ୱଭାବ, ସଂଯତଆହାର ଏବଂ ଶାରୀରିକ ସବଳତା ତାହାଙ୍କୁ ଜରାର ଅସହାୟତା ଏବଂ ନାନାବିଧ କଷ୍ଟରୁ ରକ୍ଷା କରିଥିଲା । ବାର୍ଦ୍ଧକ୍ୟରେ ମଧ୍ୟ ତାହାଙ୍କର ନୟନର ଜ୍ୟୋତି ଏବଂ ବୁଦ୍ଧିମତ୍ତା ଅବ୍ୟାହତ ଥିଲା, ତାହାଙ୍କର ଆନନଶ୍ରୀ ସର୍ବଦା ଦୟାପୂର୍ଣ୍ଣ ଥିଲା । ଚରମକାଳରେ ତାହାଙ୍କୁ ଅତ୍ୟନ୍ତ ଶାରୀରିକ ଯାତନା

ସହିବାକୁ ହୋଇଥିଲା ; କିନ୍ତୁ ତାଙ୍କ ହୃଦୟରେ ଈଶ୍ୱରନିର୍ଭରଭାବ ଏପରି ପ୍ରବଳ ଥିଲା ଯେ ସେ ଅପୂର୍ବ ସହିଷ୍ଣୁତା ସହିତ ସମସ୍ତ କଷ୍ଟ ସହିଥିଲେ । ୧୭୨୭ ଖ୍ରୀଷ୍ଟାବ୍ଦର ମାର୍ଚ୍ଚମାସ ୨୦ ତାରିଖରେ ଚଉରାଶୀତି ବର୍ଷ ବୟସରେ ନିଉଟନ୍ ପ୍ରାଣତ୍ୟାଗ କଲେ ।

ନିଉଟନଙ୍କର ଚରିତ୍ର ସାମାନ୍ୟବ୍ୟକ୍ତିର ଚରିତ୍ର ତୁଲ୍ୟ ବର୍ଣ୍ଣିତ ଅଥବା ଆଲୋଚିତ ହୋଇ ନ ପାରେ । ତାହାଙ୍କର ଜୀବନ ପର୍ଯ୍ୟାଲୋଚନା କଲେ ମହୋପକାର ଏବଂ ମହାଶିକ୍ଷା ଲାଭ ହୁଏ । ସେ ଅଲୌକିକ ପ୍ରତିଭା-ପ୍ରଭାବରେ ଗ୍ରହମାନଙ୍କ ଗତି, ଧୂମକେତୁମାନଙ୍କର କକ୍ଷ, ସମୁଦ୍ରର ଜଳୋଚ୍ଛ୍ୱାସ ପ୍ରଭୃତିର ପ୍ରକୃତତତ୍ତ୍ୱ ଅବଧାରଣ କରିଥିଲେ । ଆଲୋକ ଏବଂ ବର୍ଣ୍ଣ ଏହି ଦୁଇ ପଦାର୍ଥର ତତ୍ତ୍ୱ ନିରୂପଣ କରି ଦୃଷ୍ଟିବିଜ୍ଞାନଶାସ୍ତ୍ରର ମୂଳପତ୍ତନ କରିଥିଲେ । ପ୍ରଗାଢ଼ ଅଧ୍ୟବସାୟ ଏବଂ ବିଶିଷ୍ଟ ନୈପୁଣ୍ୟ-ସହକାରେ ନିଉଟନ୍ ପ୍ରକୃତିରୂପ ଅନନ୍ତ ଗ୍ରନ୍ଥକୁ ଅଧ୍ୟୟନ କରି ସୃଷ୍ଟିକର୍ତ୍ତାଙ୍କର ଅନନ୍ତ ଶକ୍ତି, ଜ୍ଞାନ ଏବଂ କରୁଣାକୁ ମହାପ୍ରାଣ କରିଥିଲେ । ଏତାଦୃଶ ପ୍ରତିଭାଶାଳୀ ଏବଂ ବିଦ୍ୱାନ ହୋଇ ସୁଦ୍ଧା ସେ ଏପରି ବିନୀତସ୍ୱଭାବ ଥିଲେ ଯେ ସେ ନିଜ ପାଣ୍ଡିତ୍ୟବିଷୟରେ କିଞ୍ଚିନ୍ମାତ୍ର ଅହଙ୍କାର କରୁ ନ ଥିଲେ । ତାହାଙ୍କର ଗୋଟିଏ ପ୍ରସିଦ୍ଧ ଉକ୍ତି ଜନସମାଜରେ ଅଦ୍ୟାବଧି ପ୍ରଚଳିତ ଅଛି । ତାହା ଏହି ; "ମୁଁ ବାଳକତୁଲ୍ୟ ବେଳାଭୂମିରୁ ଉପଳଖଣ୍ଡ ମାତ୍ର ସଂଗ୍ରହ କରୁଅଛି, କିନ୍ତୁ ଅନନ୍ତ ଜ୍ଞାନମହାର୍ଣ୍ଣବ ଅକ୍ଷୁଣ୍ଣଭାବରେ ସମ୍ମୁଖରେ ପଡ଼ିଅଛି ।"

## ପ୍ରଶ୍ନ

୧ । ନିଉଟନଙ୍କର ଆବିଷ୍କୃତ ପ୍ରଧାନ ମହାତତ୍ତ୍ୱ କଣ ? ସେହି ତତ୍ତ୍ୱର ସ୍ଥୂଳକଥା କହ ।

୨ । ଆଲୋକର ତିନୋଟି ମୌଳିକ କିରଣର ନାମ କହ ।

୩ । ନିଉଟନଙ୍କର ଚରିତ୍ର ବର୍ଣ୍ଣନ କର । ତାହାଙ୍କର କି ବିନୟୋକ୍ତି ସୁପ୍ରସିଦ୍ଧ ଅଟେ ?

୪ । ଜଟିଳ ବିଷୟ୍ ଗବେଷଣା, ସ୍ଥିତିସ୍ଥାପକ ପଦାର୍ଥ, ରେଖାଗଣିତ, ଦୃଷ୍ଟିବିଜ୍ଞାନ, ଆଲୋକ ପ୍ରକରଣ, ଏ ପଦଗୁଡ଼ିକ ବ୍ୟାଖ୍ୟା କର ।

୫ । ଅକ୍ଷୁଣ୍ଣ, ଅହଙ୍କାର, ମହାପ୍ରାଣ, ଜ୍ଞାପନ, ସହିଷ୍ଣୁ, ଉପାଧି, ଅଧ୍ୟକ୍ଷ, ପ୍ରଭୃତି, ବିଶ୍ଳେଷଣ, ଏହି ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ଓ ଅର୍ଥ ବୋଲ ।

# ରୋମନ୍ଥକ ଜନ୍ତୁ

ଗବାଦି କେତେକ ଜନ୍ତୁର ଚାରିଗୋଟି ପାକସ୍ଥଳୀ ଅଛି, ପ୍ରଥମ ପାକସ୍ଥଳୀରେ ଭକ୍ଷିତ ଦ୍ରବ୍ୟ ସଞ୍ଚିତ ହୁଏ । ଦ୍ୱିତୀୟରେ ପିଆଯାଇଥିବା ଜଳ ଥାଏ । ତୃତୀୟରେ ଅନାବଶ୍ୟକ ଜଳୀୟ ଭାଗ ପୃଥକ ହୁଏ । ଚତୁର୍ଥରେ ଭୁକ୍ତଦ୍ରବ୍ୟର ପରିପାକ ହୁଏ । ଏହି ଜନ୍ତୁମାନେ ଆହାର କଲାବେଳେ ତୃଣାଦି ଦ୍ରବ୍ୟ ଅଳ୍ପମାତ୍ର ଚର୍ବଣ କରି ଉଦରସ୍ଥ କରନ୍ତି । ଭୁକ୍ତଦ୍ରବ୍ୟ ପ୍ରଥମ ପାକସ୍ଥଳୀରେ ପଡ଼େ । ପରେ ଦ୍ୱିତୀୟ ପାକସ୍ଥଳୀରୁ ଜଳ ନିଃସୃତ ହୋଇ ଭୁକ୍ତଦ୍ରବ୍ୟସହିତ ମିଶ୍ରିତ ହୁଏ ଏବଂ କ୍ଷୁଦ୍ର କ୍ଷୁଦ୍ର ଗୋଲାକାର ପିଣ୍ଡରେ ପରିଣତ ହୁଏ । ତଦନନ୍ତର ଏହି ପଶୁମାନେ ସେହିସବୁ ପିଣ୍ଡ ଗୋଟି ଗୋଟି କରି ଉଦ୍ଗୀର୍ଣ୍ଣ କରି ଚର୍ବଣ କରନ୍ତି । ଏହିପ୍ରକାର ଭକ୍ଷଣକ୍ରିୟାକୁ ରୋମନ୍ଥ ବା ପାକୁଳ କହନ୍ତି । ରୋମନ୍ଥନ ଉତ୍ତାରେ ଭୁକ୍ତଦ୍ରବ୍ୟ ତୃତୀୟ ପାକସ୍ଥଳୀରେ ପଡ଼ି, ଅତିରିକ୍ତ ଜଳୀୟଭାଗ ନିଷ୍କାଶିତ ହୋଇଗଲା ଉତ୍ତାରେ ଚତୁର୍ଥ ପାକସ୍ଥଳୀରେ ପଡ଼ି ପରିପାକ ହୁଏ । ଏହିପରି ଦୁଇବାର ଚର୍ବଣ କରୁଥିବାରୁ ଏହି ପଶୁମାନଙ୍କୁ ରୋମନ୍ଥକ ବୋଲାଯାଏ ।

ରୋମନ୍ଥକ ପଶୁମାନେ ଚତୁଷ୍ପଦ ଏବଂ ସେମାନଙ୍କର ଖୁର ଖଣ୍ଡିତ । ସେମାନଙ୍କ ଦେହ ଲୋମାବୃତ । ଚକ୍ଷୁ ବଡ଼ ଓ ସୁନ୍ଦର । କର୍ଣ୍ଣ ଦୀର୍ଘ ଓ ଊର୍ଦ୍ଧ୍ୱ ଆଡ଼କୁ ଉତ୍ଥିତ । ଲାଙ୍ଗୁଳ ଅତି ଦୀର୍ଘ ଓ ତାହାର ପ୍ରାନ୍ତରେ ସ୍ଥୂଳ କେଶ-ଗୁଚ୍ଛ । ମାଈମାନଙ୍କର ସ୍ତନ ପଶ୍ଚିମପାଦଦ୍ୱୟର ମଧ୍ୟବର୍ତ୍ତୀ । ଏହି ଶ୍ରେଣୀର ପଶୁମାନେ ମନୁଷ୍ୟର ନାନା କାର୍ଯ୍ୟରେ ଲାଗନ୍ତି । ସେମାନଙ୍କର ଦୁଗ୍ଧ ଓ ସେଥିରୁ ପ୍ରସ୍ତୁତ ନବନୀତ ପ୍ରଭୃତି ନାନା ସୁସ୍ୱାଦୁ ସାମଗ୍ରୀ ମନୁଷ୍ୟର ଆହାର୍ଯ୍ୟ । ଅନେକଙ୍କର

ଲୋମରୁ କମ୍ବଳାଦି ଶୀତବସ୍ତ୍ର ପ୍ରସ୍ତୁତ ହୁଏ । ସେମାନଙ୍କ ଚର୍ମଦ୍ୱାରା ପାଦୁକାଦି ଏବଂ ଶୃଙ୍ଗଦ୍ୱାରା ପାନଆ ପ୍ରଭୃତି ନାନାବିଧ ଦ୍ରବ୍ୟ ପ୍ରସ୍ତୁତ ହୁଏ । ଅନେକେ ହଳକାର୍ଯ୍ୟ ଓ ଭାରବହନାଦି ନାନା ପ୍ରୟୋଜନରେ ଲାଗନ୍ତି ।

## ଗୋଜାତି



ଗୋଜାତିର ଶୃଙ୍ଗ ଶୂନ୍ୟ-ଗର୍ଭ ଓ ମସୃଣ ଓ ବକ୍ର । ସମସ୍ତ ବୃହତ୍ ଏବଂ ନାସାରନ୍ଧ୍ର ବିସ୍ତୃତ । ଗୋଶ୍ରେଣୀସ୍ଥ କେତେକଙ୍କର ପୃଷ୍ଠ ଓ ସ୍କନ୍ଧଦେଶର ମଧ୍ୟ-ସ୍ଥଳରେ ଗୋଟିଏ କକୁଦ ଅଛି । କେତେକଙ୍କର ଗାତ୍ରର ଲୋମ ଦୀର୍ଘ ଓ ସୂକ୍ଷ୍ମ; ତଦ୍ୱାରା ଚାମର ପ୍ରସ୍ତୁତ ହୁଏ । ଗୋ ଚମରୀ ଓ ମହିଷ ଏହି ଶ୍ରେଣୀର ଅନ୍ତର୍ଗତ ।

ପୁଂଗବ ଅର୍ଥାତ୍ ବୃଷଭ ଭାରତବର୍ଷର କେତେକ ପ୍ରଦେଶରେ ହଳ-କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି ନାହିଁ । ବୃଷଭକୁ ହିନ୍ଦୁମାନେ ମହାଦେବ ବାହନ ବୋଲି ଅର୍ଚ୍ଚନା କରନ୍ତି । ଏ ପ୍ରଦେଶରେ ଲୋକେ ଅଣ୍ଡିରା ଗୋରୁଙ୍କର ମୁଷ୍କ ଚ୍ଛେଦନ କରି ସେମାନଙ୍କୁ ବଳଦ ନାମ ଦେଇ ହଳ ପ୍ରଭୃତି ନାନା କାର୍ଯ୍ୟରେ ଲଗାନ୍ତି, କିନ୍ତୁ ସେମାନଙ୍କୁ ଛିନ୍ନମୁଷ୍କ କରିବାର ପ୍ରଥା ନିତାନ୍ତ ନିଷ୍ଠୁର ଅଟେ ।

ଗାଭୀକୁ ଗୋମାତା ବୋଲି ହିନ୍ଦୁମାନେ ଭକ୍ତି କରନ୍ତି । ବାସ୍ତବରେ ଗୋରୁ ଭାରତବର୍ଷୀୟମାନଙ୍କର ସର୍ବସ୍ୱଧନ ।

## ମହିଷ



ମହିଷ

ମହିଷ ଆକାରରେ ପ୍ରାୟ ଗୋସଦୃଶ, କିନ୍ତୁ ଏହାର ପଦ ଅପେକ୍ଷାକୃତ କିଛି ଖର୍ବ । ଶୃଙ୍ଗ ଅତିଶୟ ଦୀର୍ଘ ; କୌଣସି କୌଣସି ମହିଷର ଶୃଙ୍ଗ ଫମ୍ପା । ବର୍ଣ୍ଣ କୃଷ୍ଣବର୍ଣ୍ଣ ଓ ଚର୍ମ ସ୍ଥୂଳ । ଏମାନେ ଅରଣ୍ୟରେ ଦଳବଦ୍ଧ ହୋଇ ବାସ କରନ୍ତି । ଏବଂ ଆରଣ୍ୟ ଅବସ୍ଥାରେ ବଡ଼ ଭୟଙ୍କର ହୁଅନ୍ତି । ପୋଷା ଅବସ୍ଥାରେ ମଧ୍ୟ ଏମାନେ ସମୟେ ସମୟେ ପ୍ରଚଣ୍ଡରୂପ ଧାରଣ କରନ୍ତି । ମହିଷ ଅଧିକକ୍ଷଣ ରୌଦ୍ର ସହିପାରେ ନାହିଁ । ଏଣୁ କେବଳ ନାସିକାର ରନ୍ଧ୍ରଦ୍ୱୟ ଉପରିକୁ ରଖି ଜଳରେ ବୁଡ଼ି ରହେ ।

ମହିଷ ଅଗ୍ନି ଦେଖିଲେ ଭୟ କରେ ଏବଂ ଲୋହିତବର୍ଣ୍ଣ କୌଣସି ପଦାର୍ଥ ଦେଖିଲେ ପ୍ରଚଣ୍ଡୋନ୍ମତ୍ତ ହୁଏ ।

ମହିଷ ହଳକାର୍ଯ୍ୟରେ ଓ ଶକଟବହନକାର୍ଯ୍ୟରେ ଲାଗେ । ମହିଷର ଦୁଗ୍ଧ ଘନ ଓ ଅପେକ୍ଷାକୃତ ସୁସ୍ବାଦ୍ୟ ।

## ଛାଗଳ



ଛାଗଳ

ଏହି ଶ୍ରେଣୀସ୍ଥ ଜନ୍ତୁମାନଙ୍କର ଶୃଙ୍ଗ ବକ୍ର, ଫମ୍ପା ଓ ପରସ୍ପର ସଂଲଗ୍ନ ଅଙ୍ଗୁରୀୟ ପରମ୍ପରାସଦୃଶ । ପୁଂଜାତିର ଶ୍ମଶ୍ରୁ ହୁଏ । କେତେକ ଛାଗଳର ଗଳାରେ ଦୁଇଟି ଗଳସ୍ତନ ଝୁଲୁଥିବାର ଦେଖାଯାଏ । ଅନେକପ୍ରକାର ଛାଗଳ ଭିନ୍ନ ଭିନ୍ନ ଦେଶରେ ଦୃଷ୍ଟିଗୋଚର ହୁଅନ୍ତି ।

ଛାଗଳମାନେ ଦୁରାରୋହ ପର୍ବତ ଅବଲୀଳାକ୍ରମେ ଚଢ଼ିପାରନ୍ତି ଏବଂ ବଡ଼ ବଡ଼ ଉଚ୍ଚବୃକ୍ଷ ଆରୋହଣ କରିପାରନ୍ତି । ଏମାନେ ପର୍ବତର ଏକ ଶିଖରରୁ ଅପର ଶିଖରକୁ ଡେଇଁ ଡେଇଁ ପଡ଼ନ୍ତି । ତିବ୍ବତ ଦେଶର ବଣିକମାନେ ଏମାନଙ୍କ

ପିଠିରେ ଦ୍ରବ୍ୟସମ୍ଭାର ଲଦି ସନ୍ନିହିତ ଦେଶମାନଙ୍କୁ ବାଣିଜ୍ୟ କରିବାକୁ ଯାନ୍ତି । କାଶ୍ମୀର ଅଞ୍ଚଳର ଛାଗଲୋମରେ ବହୁମୂଲ୍ୟ ଶାଲ ପ୍ରସ୍ତୁତ ହୁଏ । ଛାଗଦୁଗ୍ଧ ଦୁର୍ବଳ ଓ ପୀଡ଼ିତ ଲୋକର ସୁପଥ୍ୟ ଅଟେ ।

## ମେଷ



ମେଷ

ନାନା ଦେଶରେ ନାନାପ୍ରକାର ମେଣ୍ଢା ଦେଖାଯାନ୍ତି । ପ୍ରଧାନତଃ ଶୀତ ଓ ଉଷ୍ଣତାର ନ୍ୟୂନତା ବା ଆଧିକ୍ୟ ଯୋଗୁଁ ଆକାରଗତ ପାର୍ଥକ୍ୟ ଘଟେ ।

ମେଷର ଶୃଙ୍ଗ ଅର୍ଦ୍ଧଚନ୍ଦ୍ରପରି ବକ୍ର, ଶୂନ୍ୟଗର୍ଭ, ବନ୍ଧୁର ଏବଂ ଲଲାଟ-ଦେଶ କିଛି ଉନ୍ନତ । ଲୋମ କୁଟିଳ ଓ ବର୍ଦ୍ଧନଶୀଳ । ଭାରତବର୍ଷର ଉତ୍ତର-ପଶ୍ଚିମ ଅଞ୍ଚଳରେ ଏକପ୍ରକାର ମେଷ ଅଛନ୍ତି, ଯେଉଁମାନଙ୍କ କ୍ଷୁଦ୍ର ଲାଙ୍ଗୁଳରେ ଦୁମ୍ବାନାମକ ପ୍ରାୟ ଆଠସେରି ଓଜନର ମାଂସପିଣ୍ଡ ଥାଏ । ମେଷଲୋମରେ ନାନାପ୍ରକାର ଶୀତବସ୍ତ୍ର ପ୍ରସ୍ତୁତ ହୁଏ ।

## ମୃଗ

ମୃଗଜାତୀୟ ଜୀବ ଦେଖିବାକୁ ସୁନ୍ଦର । ଶୁଣ୍ଢ ଲମ୍ବା, ନାସିକା ସୂକ୍ଷ୍ମାଗ୍ର । ଶୃଙ୍ଗ ଅସ୍ଥିମୟ, ଅଶୂନ୍ୟଗର୍ଭ ଏବଂ କୋମଳ-ଚର୍ମାବୃତ । ବୃକ୍ଷର ଯେପରି ଶାଖା

ପ୍ରଶାଖା ହୁଏ, ଏମାନଙ୍କର ଶୃଙ୍ଗ ସେହିପରି ଶାଖାପ୍ରଶାଖା-ବିଶିଷ୍ଟ ହୁଏ । ମୃଗୀମାନଙ୍କର ଶୃଙ୍ଗ ନ ଥାଏ । ମୃଗଶ୍ରେଣୀସ୍ଥ ଜନ୍ତୁ ଅତି ଦ୍ରୁତଗାମୀ । ବାଘ ପ୍ରଭୃତି ହିଂସ୍ରଜନ୍ତୁ ଏମାନଙ୍କୁ ଆକ୍ରମଣ କଲେ, ଏମାନେ ଯୂଥବଦ୍ଧ ହୋଇ ଶୃଙ୍ଗସବୁ ଉପରକୁ ଟେକି ଠିଆ ହୁଅନ୍ତି ; ତେଣୁ ଆକ୍ରମଣକାରୀ ପଶୁ ସେମାନଙ୍କ ମଧ୍ୟରେ ପଶିପାରେ ନାହିଁ ।



ମୃଗ

କବିମାନେ ହରିଣର ଚକ୍ଷୁକୁ ସୁନ୍ଦରନୟନର ଉପମାନରୂପେ ଗ୍ରହଣ କରନ୍ତି । ହରିଣ ଅତି ଭୟାଳୁ । ପତ୍ରର ଖଡ଼ଖଡ଼ ଶବ୍ଦ ହେଲେ ଚକିତ ହୋଇ ପଳାଇଯାଏ । ଜଳପାନ କଲାବେଳେ ଆପଣାର ପ୍ରତିବିମ୍ବ ଦେଖି ଚମକିପଡ଼େ ।

କସ୍ତୁରୀମୃଗର ନାଭି ନିକଟରେ ଗୋଟିଏ ମାଂସକୋଷ ଥାଏ । ସେହି କୋଷରେ ଏକପ୍ରକାର ପଦାର୍ଥ ଥାଏ ତାହାକୁ କସ୍ତୁରୀ ବୋଲାଯାଏ । କସ୍ତୁରୀ ବା ମୃଗନାଭି ବଡ଼ ମହାର୍ଘ ପଦାର୍ଥ ; ତାହା ନାନାପ୍ରକାର ଔଷଧରେ ମିଶ୍ରିତ ହୁଏ । କସ୍ତୁରୀମୃଗର ଶୃଙ୍ଗ ନାହିଁ କିନ୍ତୁ ଶୁଣ୍ଢ ଅଛି । ଶୀତପ୍ରଧାନ ଉଚ୍ଚପାର୍ବତ୍ୟ

ଦେଶରେ ବଲ୍ଗାମୃଗ ନାମକ ଏକପ୍ରକାର ମୃଗ ଅଛି । ଏହି ପ୍ରାଣୀ ଲାପଲ୍ଣ୍ଡ-ବାସୀଙ୍କର ଜୀବନସର୍ବସ୍ୱ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେମାନେ ଏହାର ସ୍କନ୍ଧରେ ଗାଡ଼ି ବାନ୍ଧି ତାହା ଉପରେ ବସି ନଦୀ ଓ ହ୍ରଦର ଉପରସ୍ଥ ଘନୀଭୂତ ହିମ ଅର୍ଥାତ୍ ବରଫ ଉପରେ ଗମନାଗମନ କରନ୍ତି । ସେ ଦେଶର ଲୋକମାନେ ଏହାର ଦୁଗ୍ଧପାନ ଓ ମାଂସଭକ୍ଷଣ କରନ୍ତି ଏବଂ ଲୋମ ଓ ଚର୍ମରେ ଶୀତବସ୍ତ୍ର ପ୍ରସ୍ତୁତ କରନ୍ତି ।

## ଉଷ୍ଟ୍ର

ଏହି ଶ୍ରେଣୀର ଜୀବମାନଙ୍କର ଗଳଦେଶ ଲମ୍ବା ଓ ବକ୍ର । ଉପରର ଓଷ୍ଠ ଖଣ୍ଡିତ ଓ ପ୍ରତି ପାଦର ଖୁର ଅସ୍ଥିମଜ୍ଜା ତଳଦ୍ୱାରା ଲିପ୍ତ । ଏମାନଙ୍କର ଶୃଙ୍ଗ ନାହିଁ ପୃଷ୍ଠ କୁବ୍ଜ ଓ ସେଥି ଉପରେ ଏକ ବା ଦୁଇ କକୁଦ ଥାଏ ।



ଓଟ

ଏମାନେ ଦେଖିବାକୁ ଅତି ଅସୁନ୍ଦର । ଉଷ୍ଟ୍ର ଅତି ସହିଷ୍ଣୁ, ପ୍ରଭୂତ ବଳଶାଳୀ ଓ ଅନାୟାସରେ ମନୁଷ୍ୟର ବଶ୍ୟ । ଦୁସ୍ତର ବାଲୁକାମୟ ମରୁସାଗର

ପାଣହେବା ନମିତ୍ ଓଟ ମନୁଷ୍ୟର ତରଣୀସ୍ୱରୂପ ଅଟେ । ଓଟର ଉଦରରେ ଏକପ୍ରକାର ସ୍ଥଳୀ ଅଛି, ଯହିଁରେ ସେ ଜଳ ସଞ୍ଚୟ କର ରଖେ ଏବଂ ଯହିଁରୁ ସେ ପ୍ରୟୋଜନ ଅନୁସାରେ ଜଳ କଣ୍ଠନଳୀକୁ ଆଣି ପିପାସା ନବାରଣ କରେ । ଓଟ ଦୁଇକ୍ରୋଶ ଦୂରରେ ଜଳ ଥିଲେ ତାହା ଜାଣିପାରେ । ତାହାର କକୁଦରେ ଏକପ୍ରକାର ମେଦ ସଞ୍ଚିତ ଥାଏ । ସେ ପ୍ରତଦନ ୩୦ କ୍ରୋଶାଧିକ ପଥ ଚାଲି ଚାରିପାଞ୍ଚ ଦନଯାଏ ଆହାର ଓ ଜଳପାନବନା ରହିପାରେ । ବାକ୍ଟ୍ରିଆ ଦେଶର ଉଷ୍ଟ୍ରମାନଙ୍କର ଦୁଇଟା କକୁଦ ଦେଖାଯାଏ ।

କମେଲକ ଆରବମାନଙ୍କର ଅମୂଲ୍ୟ ଧନ । ସେମାନେ ଉଷ୍ଟ୍ରପୃଷ୍ଠରେ ବାଣିଜ୍ୟଦ୍ରବ୍ୟ ଲଦ ଏବଂ ନଜେ ସେଥିଉପରେ ଚଢ଼ି ବାଣିଜ୍ୟାର୍ଥ ଦେଶାନ୍ତର ଗମନ କରନ୍ତି । ସେମାନେ ଓଟର ଦୁଗ୍ଧପାନ ଓ ମାଂସଭକ୍ଷଣ କରନ୍ତି, ଲୋମରେ ଶୀତବସ୍ତ୍ର ଓ ଚର୍ମରେ ଗୋଣୀଆଦ ପ୍ରସ୍ତୁତ କରନ୍ତି ।

## ପ୍ରଶ୍ନ

୧ । ରୋମନ୍ଥକ ପଶୁମାନଙ୍କର ବଶେଷ ଲକ୍ଷଣ ନର୍ଦ୍ଦେଶ କର ଏବଂ ସେମାନଙ୍କର ପାକସ୍ଥଳୀର ବର୍ଣ୍ଣନ କର ।

୨ । କପାଇଁ ଅଶ୍ୱ, ଗର୍ଦ୍ଦଭ ଓ ହସ୍ତୀକୁ ରୋମନ୍ଥକ ଶ୍ରେଣୀର ଅନ୍ତର୍ଗତ ବୋଲ ଧରାଯାଏ ନାହିଁ ?

୩ । ଉଷ୍ଟ୍ର ବଷୟରେ ଗୋଟିଏ ପ୍ରବନ୍ଧ ଲେଖ ।

# ଆଣ୍ଡ୍ରୋକ୍ଲିସ୍ ଓ ସିଂହ

*ପ୍ରାଚୀନକାଳରେ ଯବନମାନଙ୍କ ଦେଶରେ ଆଣ୍ଡ୍ରୋକ୍ଲିସ୍‌ନାମକ ଜଣେ ମନୁଷ୍ୟ କୌଣସି ଧନଲୋକର ଗୃହରେ କ୍ରୀତଦାସରୂପେ ଥିଲା । ତାହାର ପ୍ରଭୁ ତାହାପ୍ରତି ଏପର ନଷ୍ଠୁର ବ୍ୟବହାର କରୁଥିଲେ ଯେ, ସେ ଅବଶେଷରେ

ତାହା ସହି ନ ପାରି ଏବଂ ପ୍ରତୀକାରର କୌଣସି ଉପାୟ ନ ଦେଖି ମନରେ ବିଚାରିଲା "ଏପରି ଘୋର କ୍ଳେଶରେ ରହିବା ଅପେକ୍ଷା ମରଣ ସହସ୍ରଗୁଣରେ ଭଲ । ମୁଁ ଏଠାରୁ ପଳାଇଯିବି । ଧରାପଡ଼ିଲେ ମରଣ ନିଶ୍ଚିତ ; ଶ୍ୱାପଦସଙ୍କୁଳ ଅରଣ୍ୟକୁ ପଳାଇଗଲେ ହିଂସ୍ରଜନ୍ତୁର ଗ୍ରାସରେ ପଡ଼ିବା ସମ୍ଭାବ୍ୟ । ଏଠାରେ ଏପରି ନିଦାରୁଣ ଯନ୍ତ୍ରଣା ସହିବା ଅପେକ୍ଷା ବନରେ ଶ୍ୱାପଦଦ୍ୱାରା ନିହତ ହେବା ବରଂ ଭଲ ।"



ଆଣ୍ଡ୍ରୋକ୍ଲସ୍ ଓ ସିଂହ

ଏହି ସଂକଳ୍ପ କରି ସେ ପ୍ରଭୁଗୃହରୁ ପଳାଇଗଲା ଏବଂ ନଗରର ଅଦୂରବର୍ତ୍ତୀ ନିବିଡ଼ ବନମଧ୍ୟରେ ଲୁଚି ରହିଲା । ସେ ଏକ ସଙ୍କଟରୁ ପାର ହୋଇ ବନମଧ୍ୟରେ ଦ୍ୱିତୀୟ ସଙ୍କଟରେ ପଡ଼ିଲା । ବନଯାକ କଣ୍ଟକମୟ ଘୋର ଦୁର୍ଗମ ଅରଣ୍ୟରେ ବୁଲିବାରୁ ତାହାର ଦେହ କ୍ଷତବିକ୍ଷତ ହୋଇଗଲା । କ୍ଷୁଧାରେ ଅସ୍ଥିର ଏବଂ କ୍ଳାନ୍ତିରେ ନିତାନ୍ତ ମ୍ରିୟମାଣ ହୋଇ ସେ ବନମଧ୍ୟସ୍ଥ ଗୋଟାଏ ଗୁହା ମଧ୍ୟରେ ଆଶ୍ରୟ ଗ୍ରହଣ କଲା ।

ଉକ୍ତ ଗୁହାରେ କିଛିକ୍ଷଣ ପଡ଼ିରହିଲାପରେ ସେ ଗୋଟାଏ ଭୀଷଣ

ଗର୍ଜ୍ଜନ ଶୁଣିବାକୁ ପାଇଲା । ସେହି ଶବ୍ଦ କୌଣସି ବଡ଼ ଶ୍ୱାପଦର ଗର୍ଜ୍ଜନ ବୋଲି ଜାଣିପାରି ସେ ଭୟରେ କାତର ହେଲା । ପଳାଇବା ଅଭିପ୍ରାୟରେ ସେ ଗହ୍ୱରର ମୁଖ ପର୍ଯ୍ୟନ୍ତ ଆସି ଦେଖିଲା ଯେ ଗୋଟିଏ ପ୍ରକାଣ୍ଡ ସିଂହ ତାହାଆଡ଼କୁ ଆସୁଅଛି ଓ ପଳାଇବାର ବାଟ ନାହିଁ । ସିଂହହସ୍ତରେ ନିଜର ନିଧନ ଅବଶ୍ୟମ୍ଭାବୀ ବୋଲି ବିଚାରି ସେ ଭୟରେ ସ୍ତମ୍ଭିତ ହୋଇ ଚିତ୍ରାର୍ପିତପ୍ରାୟ ରହିଅଛି ଏପରି ସମୟରେ ସେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଦେଖିଲା ଯେ ସିଂହ ଧୀରେ ଧୀରେ ପଦବିକ୍ଷେପ କରି ଆସୁଅଛି ଏବଂ ତାହାର କୌଣସି ପ୍ରକାର କ୍ରୋଧ ବା ହିଂସା ଲକ୍ଷିତ ହେଉ ନାହିଁ । ସହସା ସିଂହ ଏକପ୍ରକାର ଆର୍ତ୍ତ-ରବ କରି ସେହି ମନୁଷ୍ୟର ସମ୍ମୁଖରେ ଉପସ୍ଥିତ ହେଲା ।

ଆଣ୍ଡ୍ରୋକ୍ଲିସ୍ ସ୍ୱଭାବତଃ ସ୍ଥିରମତି ଥିବାରୁ ସେ ସିଂହଆଡ଼କୁ ଅନାଇ ଦେଖିଥିଲା ଯେ, ତାହାର ଗୋଟିଏ ପାଦର ବିକଳ ହୋଇଅଛି ଓ ସେହି ହେତୁରୁ ସେ ଝୁଣ୍ଟେଇ ଝୁଣ୍ଟେଇ ଚାଲୁଅଛି । ସେ ଆହୁରି ନିରୀକ୍ଷଣ କରି ଦେଖିଲା ଯେ ସେ ପାଦଟି ଫୁଲିଅଛି । ସିଂହର ପାଦରେ କ୍ଷତ ବା ଜଖମ ହୋଇଥିବାର ଅନୁମାନ କରି, ଏବଂ ତାହାର ଶାନ୍ତଭାବ ଦେଖି ସେ ଭୟ-ପରିହାର-ପୂର୍ବକ ସିଂହନିକଟକୁ ଯାଇ, ବୈଦ୍ୟ ରୋଗୀର ହସ୍ତସ୍ଥ ନାଡ଼ୀ ଦେଖିବା ପରି ଉକ୍ତ ପାଦକୁ ହସ୍ତରେ ଧରିଲା ଏବଂ ବୁଝିପାରିଲା ଯେ ସେହି ପାଦରେ ଗୋଟାଏ ଅତି ବଡ଼ କଣ୍ଟା ପଶିଥିବାରୁ ତାହା ଫୁଲିଯାଇଅଛି । ଆଣ୍ଡ୍ରୋକ୍ଲିସ୍ ସେହି ପାଦ ପରୀକ୍ଷା କଲାବେଳେ, ସିଂହ କୌଣସି ପ୍ରକାର କ୍ରୋଧର ଲକ୍ଷଣ ପ୍ରକାଶ କରିବା ଦୂରେ ଥାଉ, ଅନୁନୟର ଭାବ ପ୍ରକାଶ କରି ଯେପରି କଣ୍ଟାଟି କାଢ଼ିଦେବା ପାଇଁ ପ୍ରାର୍ଥନା କରିବାକୁ ଲାଗିଲା । ଅନନ୍ତର ଆଣ୍ଡ୍ରୋକ୍ଲିସ୍ କଣ୍ଟାଟି କାଢ଼ିଦେଲା ଏବଂ ଯେଉଁ ସ୍ଥାନ ଫୁଲିଥିଲା ତାହାକୁ ଚିପିଦେବାରୁ ସେଥିରୁ ବହୁପରିମାଣ ପୂଯ ବାହାରିଲା ।

ପୂଯ ନିଷ୍କାଶନାନନ୍ତର ପାଦପୀଡ଼ାର ଉପଶମ ହୁଅନ୍ତେ ସିଂହ ଲମ୍ଫଝମ୍ପ ଦ୍ୱାରା କୃତଜ୍ଞ ଓ ସାହ୍ଲାଦ ଭାବ ପ୍ରକାଶ କରି ତାହାର ସୁବୃହତ୍ ଲାଙ୍ଗୁଳ ହଲାଇ ଆଣ୍ଡ୍ରୋକ୍ଲିସର ହସ୍ତପଦ-ଲେହନ କରିବାକୁ ଲାଗିଲା । ସେହି ମୁହୂର୍ତ୍ତରୁ ସିଂହ

ତାହାପରି ପରମାତ୍ମୀୟଭାବ ପୋଷଣ କରି ତାହାର ଆହାର ନିମିତ୍ତ ପ୍ରତିଦିନ ମୃଗୟାଲବ୍ଧ ମାଂସ ଆଣି ଦେବାକୁ ଲାଗିଲା । ଏହିପ୍ରକାରରେ ଉକ୍ତ ଲୋକ ସିଂହର ଆତିଥ୍ୟ ସମ୍ଭୋଗ କରି କରି କିଛିକାଳ କଟାଇଲା ।

ଏଥିଉତ୍ତାରେ ଆନ୍ଡ୍ରୋକ୍ଲସ୍ ଦିନେ ଅରଣ୍ୟମଧ୍ୟରେ ଅସାବଧାନଭାବରେ ବୁଲୁଥିବା ସମୟରେ ତାକୁ ଖୋଜୁଥିବା କେତେକ ସିପାହିଙ୍କ ହସ୍ତରେ ଧରାପଡ଼ିଲା ଏବଂ ସେ ଦେଶର ଆଇନ ଅନୁସାରେ ପ୍ରଭୁଗୃହରୁ ପଳାଇଯିବା ଅପରାଧରେ ତାହା ପ୍ରତି ଏହି ଦଣ୍ଡାଜ୍ଞା ହେଲା ଯେ ବହୁଦିବସର ଅନଶନ ଦ୍ୱାରା ଏକାନ୍ତ ବୁଭୁକ୍ଷିତ ଗୋଟାଏ ଭୀଷଣ ସିଂହମୁଖରେ ତାହାକୁ ନିକ୍ଷେପ କରିବାକୁ ହେବ ।

ନିର୍ଦ୍ଦିଷ୍ଟ ଦିବସ ଉପସ୍ଥିତ ହୁଅନ୍ତେ ସେହି ଅସହାୟ ଲୋକଟି ଗୋଟିଏ ସୁବୃହତ ପ୍ରାଙ୍ଗଣକୁ ଆନୀତା ହେଲା । ସେଠାରେ ସହସ୍ର ସହସ୍ର ଲୋକ ଆନ୍ଡ୍ରୋକ୍ଲସର ସେହି ଭୟଙ୍କର ଶାସ୍ତି ଦେଖିବା ନିମିତ୍ତ ଜୁଣ୍ଟ ହୋଇଥିଲେ । ସହସା ଗୋଟାଏ ଭୟାବହ ଗର୍ଜନ ଶ୍ରୁତିଗୋଚର ହେଲା ଏବଂ ଗୋଟାଏ ପ୍ରକାଣ୍ଡକାୟ ସିଂହ ପିଞ୍ଜରରୁ ବାହାରି କ୍ରୋଧରେ ସଟାକେଶ ଫୁଲାଇଦେଇ, କରାଳ ରକ୍ତବର୍ଣ୍ଣ ଚକ୍ଷୁରୁ ଯେପରି ଅଗ୍ନିସ୍ଫୁଲିଙ୍ଗ ବିକୀରଣ କରି ଏବଂ ଭୟଙ୍କର ମୁଖବ୍ୟାଦାନ କରି ଆନ୍ଡ୍ରୋକ୍ଲସ୍ ଆଡ଼କୁ ମୂର୍ତ୍ତିମନ୍ତ ମୃତ୍ୟୁସ୍ୱରୂପ ଧାଇଁଆସିଲା । ତତ୍‌କ୍ଷଣାତ୍ ଘୋରଭୀତଭାବରେ ଜନସଙ୍ଘ ସ୍ତମ୍ଭିତ ଓ ଅବାକ୍ ହୋଇଯାଇ ଆନ୍ଡ୍ରୋକ୍ଲସର ନିଦାରୁଣ ବଧ ପ୍ରତୀକ୍ଷା କରିବାକୁ ଲାଗିଲେ । କିନ୍ତୁ କି ଅଭାବନୀୟ ବିସ୍ମୟକର ବ୍ୟାପାର ଉପସ୍ଥିତ ହେଲା । ସିଂହ ସେ ହତଭାଗ୍ୟ ଲୋକର ପ୍ରାଣ ସଂହାର ନ କରି ଓଲଟି ତାହାର ପାଦକୁ, ବିଶ୍ୱସ୍ତ ସ୍ନେହୀ କୁକୁର ଯେପରି ପ୍ରଭୁପାଦକୁ କୃତଜ୍ଞତାଭରେ ଲେହନ କରେ, ସେହିପରି ଚାଟିବାକୁ ଲାଗିଲା ଏବଂ ଅପହୃତ ପୁତ୍ରକୁ ପୁଣି ଫେରିପାଇଲେ ମାତା ଯେପରି ସ୍ନେହାନନ୍ଦରେ ଅଧୀର ହୁଏ ତଦ୍ଭିଳି ସ୍ନେହ ପ୍ରକାଶ କରିବାକୁ ଲାଗିଲା ।

ନଗରର ଶାସନକର୍ତ୍ତା ଏହି ଆଶ୍ଚର୍ଯ୍ୟ ବ୍ୟାପାର ଦେଖି ଆନ୍ଡ୍ରୋକ୍ଲସକୁ

ତାଙ୍କ ପଚାରିଲେ "ଆରେ ହତଭାଗ୍ୟ ! ତୁ ମୃତ୍ୟୁକୁ ଲଙ୍ଘିବାପାଇଁ ସିଂହଉପରେ ମନ୍ତ୍ରପ୍ରଭାବ ବିସ୍ତାର କରିଅଛୁ । ସତ୍ୟକଥା କହ, ତୋର ପ୍ରାଣଦଣ୍ଡ ଅଲଙ୍ଘନୀୟ ।" ତହୁଁ ଆଣ୍ଡ୍ରୋକ୍ଲିସ୍ ତାହାର ଅରଣ୍ୟବାସର ସମୁଦାୟ ବୃତ୍ତାନ୍ତ କହିଲା । ଉପସ୍ଥିତ ଲୋକବୃନ୍ଦ ତାହା ଶୁଣି ଯୁଗପତ୍ ବିସ୍ମୟ ଓ ଆନନ୍ଦରେ ନିମଜ୍ଜିତ ହେଲେ ଏବଂ ସମସ୍ତେ ଏକବାକ୍ୟରେ ଶାସନକର୍ତ୍ତାଙ୍କୁ କହିଲେ "ଆଣ୍ଡ୍ରୋକ୍ଲିସକୁ କ୍ଷମା କରନ୍ତୁ ।" ଶାସନକର୍ତ୍ତା ଜନମଣ୍ଡଳୀର ପ୍ରାର୍ଥନା ପୂର୍ଣ୍ଣ କଲେ ଏବଂ ଆଣ୍ଡ୍ରୋକ୍ଲିସର ପ୍ରାଣଦାତା ସିଂହକୁ ଆଣ୍ଡ୍ରୋକ୍ଲିସ୍ ହସ୍ତରେ ସମର୍ପଣ କଲେ ।

## ପ୍ରଶ୍ନ

୧ । ଏହି ଗଳ୍ପଟି ତୁମ୍ଭର ନିଜର କଥାରେ ଲେଖ ।

୨ । ଅନଶନ, ବୁଭୁକ୍ଷିତ, ଆତିଥ୍ୟ, ଆତ୍ମୀୟ, ନିର୍ଦ୍ଦିଷ୍ଟ, ଏହି ପଦମାନଙ୍କର ବ୍ୟୁତ୍ପତ୍ତି ବୋଲ ।

୩ । ଯୁଗପତ୍, ଜନସଙ୍ଘ, ମୃଗୟା, କଙ୍କାଳ, ତଦ୍ଵାର୍ପିତ, ଏହି ଶବ୍ଦଗୁଡ଼ିକ ମଧ୍ୟରୁ ପ୍ରତ୍ୟେକକୁ ପ୍ରୟୋଗ କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର ।

# ଦ୍ୱିତୀୟ ପରିଚ୍ଛେଦ

## ନୀତିରତ୍ନମାଳା

ପ୍ରତ୍ୟକ୍ଷ ଦେବତା ବୋଲି ମଣିବହେ, ଜନନୀଜନକେ
କରିବ ଦୁହିଙ୍କ ସେବା ପ୍ରାଣପଣେ ବାଳିକାବାଳକେ,
ଶୁଣାଇବ ମୃଦୁବାଣୀ ଆଚରିବ ପ୍ରିୟ ଅନୁକ୍ଷଣ,
ସୁପୁତ୍ର ସୁକନ୍ୟା ହୋଇ ସୁପବିତ୍ର କରିହେ ଜୀବନ
ଅଟନ୍ତି ପରମଗୁରୁ ପିତାମାତା ଘେନ ଏହି ଦୀକ୍ଷା,
ଆକାଶଠୁଁ ବଡ଼ ପିତା ମାତା ବଡ଼ ପୃଥିବୀ ଅପେକ୍ଷା ।
ନୁହେ ବୃଦ୍ଧ ସେହି ଜନ ଶୁକ୍ଳକେଶ ଅଟେ ଯାର ଶିର
ଯୌବନେ ଯେ ଜ୍ଞାନେ ରତ ହେବେ ତାକୁ ବୋଲନ୍ତି ସ୍ଥବିର ।
ଯୌବନେ ଧାର୍ମିକ ହେବ, ଏ ଜୀବନ ଯେଣୁ ଅନିଶ୍ଚିତ,
କେ ଜାଣେ କାହାର ଆଜ ମୃତ୍ୟୁକାଳ ହେବ ଉପସ୍ଥିତ ।
ସୁଚରିତ୍ର ସୁଶୀଳ ଯେ ପ୍ରସନ୍ନାତ୍ମା ଆମୃଙ୍କ ସୁମତି
ଇହଲୋକେ ଲଭେ ମାନ ପରଲୋକେ ଲଭଇ ସଦ୍ଗତି ।
ବଚନ ମନନ ଯାର ସତ୍ୟ-ପୂତ ପୁଣି ସୁସଂଯତ,
ପ୍ରଶାନ୍ତ ଯାହାର ମନ ପୁଣ୍ୟକର୍ମେ ସର୍ବଦା ନିରତ,
ଅଧର୍ମର ଭାବ ଯେହୁ ହୃଦୟରେ ନ ପୋଷଇ କ୍ଷଣେ,
ପବିତ୍ର ଜୀବନ ତାର ଧନ୍ୟ ଧନ୍ୟ ଏ ମର୍ତ୍ତ୍ୟଭୁବନେ ।
ନିଜେ ସେ ନିଜର ବନ୍ଧୁ ଜିତେନ୍ଦ୍ରିୟ ଅଟଇ ଯେ ଜନ,
ନିଜେ ସେ ନିଜର ବୈରୀ ରିପୁଙ୍କୁ ଯେ ନ କରେ ଦମନ ।
ଲଭି ଏ ମନୁଷ୍ୟ-ଜନ୍ମ ଲଭିଣ ଏ ବୁଦ୍ଧି ଓ ହୃଦୟ
ଆତ୍ମଘାତୀ ସେ ଜନ ଯେ ପରମାୟୁ ବୃଥା କରେ କ୍ଷୟ ।

ପ୍ରଥମ ବୟସେ କର ସେହି କର୍ମ ଯଦ୍ୱାରା ଜୀବନ
ହୋଇବ ଉତ୍ତରକାଳେ ସୁଖ ଆଉ ଶାନ୍ତିର ଭୁବନ ।
ଧନହୀନ ବୋଲି କେବେଁ ଆପଣାକୁ ଅବଜ୍ଞା ନ କର
ଉଦ୍ୟୋଗୀ ଲଭଇ ଲକ୍ଷ୍ମୀ, ତେଣୁ କାର୍ଯ୍ୟେ ହୁଅ ହେ ତତ୍ପର ।

କାଳଚକ୍ରର ଆବର୍ତ୍ତନେ
ଭୁଞ୍ଜନ୍ତି ସୁଖ ଦୁଃଖ ଜନେ,
ସୁଖ ବା ଦୁଖ ଆସୁ ଯାହା
ବହିବ ଧୀର—ଚତ୍ତେ ତାହା ।
ଧନ-ଅଭାବେ ଧର୍ମପଥ
ନ ହୁଡ଼ ହୋଇ ଅସଂଯତ ।

ପ୍ରଶ୍ନ

୧ । 'ଆକାଶକୁଁ ବଡ଼ ପିତା, ମାତା ବଡ଼ ପୃଥିବୀ ଅପେକ୍ଷା,' ଏହି ଶ୍ଳୋକାର୍ଦ୍ଧର ଭାବ ସ୍ପଷ୍ଟରୂପେ ବବୃତ କର ।

୨ । ନିଜେ ନିଜର ବନ୍ଧୁ, ନିଜେ ନିଜର ବୈରୀ, ଏ ବିଷୟରେ ଗୋଟିଏ ପ୍ରବନ୍ଧ ଲେଖ ।

୩ । 'ଆତ୍ମଘାତୀ ସେ ଜନ ଯେ ପରମାୟୁ ବୃଥା କରେ କ୍ଷୟ' ଏ ବାକ୍ୟଟିର ବିସ୍ତାରିତ ବ୍ୟାଖ୍ୟା ଲେଖ ।

୪ । ଉଦ୍ୟୋଗୀ ଲଭଇ ଲକ୍ଷ୍ମୀ, ଏହି ଉକ୍ତିର ଯାଥାର୍ଥ୍ୟ ଦୃଷ୍ଟାନ୍ତଦ୍ୱାରା ପ୍ରତିପାଦନ କର ।

# କୁମାରୀ ଫ୍ଲରେନ୍ସ ନାଇଟିଙ୍ଗେଲ୍

ଯେଉଁସବୁ ସଦ୍‌ଗୁଣ ନିମିତ୍ତ ନାରୀପ୍ରକୃତି ବିଶିଷ୍ଟରୂପେ ପ୍ରସିଦ୍ଧ, ସେଥିର ମଧ୍ୟରେ ଦୟା ଗୋଟିଏ ପ୍ରଧାନ ଗୁଣ ଅଟେ । ନାରୀଜାତିର ଦୟା ଯେ ମନୁଷ୍ୟର ଅଶେଷ ଦୁର୍ଗତିର ମହୌଷଧ, ତାହା କିଏ ଅସ୍ୱୀକାର କରିବ ?

ନାରୀଜାତିର ସ୍ୱାଭାବିକ ଦୟାର୍ଦ୍ରତା ପୃଥିବୀର ସର୍ବାଞ୍ଚଳରେ ଲକ୍ଷିତ ହୁଏ । କୋମଳହୃଦୟା ପରଦୁଃଖମୋଚନତତ୍ପରା ନାରୀମାନଙ୍କର ଅନବଚ୍ଛିନ୍ନ କରୁଣା ନିକଟରେ ସମସ୍ତଙ୍କ ହୃଦୟ ସ୍ୱଭାବତଃ ପ୍ରଣତ ହୁଏ । କୁମାରୀ ନାଇଟିଙ୍ଗେଲ୍ ନାମ୍ନୀ ଇଂଲଣ୍ଡୀୟ ମହିଳାଙ୍କର କରୁଣାପୂର୍ଣ୍ଣ ପୁଣ୍ୟ କୀର୍ତ୍ତି ଆଲୋଚନା କଲେ ହୃଦୟ ବିସ୍ମୟରେ ଅଭିଭୂତ ହୁଏ ।



କୁମାରୀ ଫ୍ଲରେନ୍ସ ନାଇଟିଙ୍ଗେଲ୍

ଏହି ପୁଣ୍ୟବତୀ ରମଣୀ ୧୮୨୦ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡ ଦେଶରେ ଧନାଢ୍ୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । ରୂପରେ ପରମା ସୁନ୍ଦରୀ, ବିଦ୍ୟାବିଷୟରେ ସୁପଣ୍ଡିତା ଏବଂ ସାଂସାରିକ ଅବସ୍ଥା ସମ୍ବନ୍ଧରେ ବିପୁଳ ବିଭବ-ଶାଳିନୀ ହେଲେହେଁ, ଯୌବନ କାଳରୁ ସେ ଆମୋଦ ବିଳାସ ପ୍ରତି ଏକାନ୍ତ

ପରାଙ୍ମୁଖ ହୋଇ ପରଦୁଃଖମୋଚନରୂପ ମହାବ୍ରତଆଡ଼କୁ ଆକୃଷ୍ଟ ହୋଇଥିଲେ ଏବଂ ତାହାଙ୍କର ଧନ ବିଦ୍ୟା ବୁଦ୍ଧି ସମୁଦାୟ ଆର୍ତ୍ତମାନଙ୍କ ହିତସାଧନରେ ସମର୍ପଣ କରିବେ ବୋଲି ସଂକଳ୍ପ କରିଥିଲେ । ସେ କେତେକ ବର୍ଷ ଇଂଲଣ୍ଡର ନାନାବିଧ ଚିକିତ୍ସାଳୟମାନଙ୍କର ପର୍ଯ୍ୟବେକ୍ଷଣରେ ଅତିବାହିତ କରି ୧୮୪୯ ଖ୍ରୀଷ୍ଟାବ୍ଦରେ ଜର୍ମେନୀର ଅନ୍ତର୍ଗତ ଗୋଟିଏ ଚିକିତ୍ସାଳୟରେ ରୋଗୀମାନଙ୍କ ଶୁଶ୍ରୂଷା ନିମିତ୍ତ ଧାତ୍ରୀବ୍ରତ ଗ୍ରହଣ କଲେ । ତହିଁଉତ୍ତାରେ ଜର୍ମେନୀ ଦେଶର ଅନେକଗୁଡ଼ିଏ ଚିକିତ୍ସାଳୟର କାର୍ଯ୍ୟ ପର୍ଯ୍ୟବେକ୍ଷଣ କରି, ଇଂଲଣ୍ଡକୁ ଫେରି-ଆସି ସେଠାରେ ଅସହାୟା ରୁଗ୍ଣା ନାରୀମାନଙ୍କ ନିମିତ୍ତ ଗୋଟିଏ ଚିକିତ୍ସାଳୟ ଓ ଆଶ୍ରୟଗୃହ ସଂସ୍ଥାପନ କଲେ । ଅବଶେଷରେ ସେ ଯେଉଁ ଅଲୌକସାମାନ୍ୟ କାର୍ଯ୍ୟର ଅନୁଷ୍ଠାନ କଲେ ତାହା ଚିରସ୍ମରଣୀୟ ଅଟେ ।

୧୮୫୪ ଖ୍ରୀଷ୍ଟାବ୍ଦରେ ରୁସିୟା ଓ ଇଂଲଣ୍ଡ ମଧ୍ୟରେ କ୍ରିମିୟା ଯୁଦ୍ଧ ହୋଇଥିଲା । ସେ ଯୁଦ୍ଧରେ ଆହତ ସୈନିକମାନେ ଚିକିତ୍ସା ଏବଂ ଶୁଶ୍ରୂଷାର ଅଭାବଯୋଗୁଁ ଘୋର ଦୁଃଖ ଯାତନାରେ ଛଟପଟ ହେବାକୁ ଲାଗିଲେ । କିଏ ସେ ଦୁର-ଦେଶକୁ ଯାଇ ପୀଡ଼ାହତ ସୈନିକମାନଙ୍କର ଦୁଃଖ ପ୍ରଶମନ କରିବ ? ସେତେ-ବେଳେ ଦୟାରୂପେ ଅବତୀର୍ଣ୍ଣା ଦେବୀରୂପିଣୀ କୁମାରୀ ନାଇଟିଙ୍ଗେଲ୍ 'ସେବା-ଭଗିନୀ' ନାମ୍ନୀ ମହିଳାମଣ୍ଡଳୀର ଅନ୍ତର୍ଗତ କେତେଗୁଡ଼ିଏ ସୁଶିକ୍ଷିତା ପରିଚାରିକା ସଙ୍ଗରେ ସେହି ମହା ଦୁରୂହ କାର୍ଯ୍ୟସାଧନନିମିତ୍ତ ଅଗ୍ରସର ହେଲେ । ଯୁଦ୍ଧଭୂମି ନିକଟରେ ଉପସ୍ଥିତ ହୋଇ କୁମାରୀ ନାଇଟିଙ୍ଗେଲ୍ ଏବଂ ତାଙ୍କ ସହକାରିଣୀ-ମାନେ ସହସ୍ର ସହସ୍ର କ୍ଷତକଳେବର, ନାନାରୋଗନିପୀଡିତ ମୃତକଳ୍ପ ସୈନିକ-ମାନଙ୍କୁ ବର୍ଷାଧିକ କାଳ ଅହୋରାତ୍ର ଅବିଶ୍ରାନ୍ତଭାବରେ ଶୁଶ୍ରୂଷା କରିବାକୁ ଲାଗିଲେ । କି ନୈରାଶ୍ୟମୟ ଦୁଃଖରାଶିମଧ୍ୟରେ ସେମାନଙ୍କୁ କାର୍ଯ୍ୟ କରିବାକୁ ହୋଇଥିଲା । ଚାରିଆଡ଼େ ମୃତ୍ୟୁର ବିକଟ ଦୃଶ୍ୟ ଓ ଦୁର୍ଗନ୍ଧ, ଶତ ଶତ ରୋଗୀ ମୃତ୍ୟୁକବଳରେ ପଡ଼ୁଅଛନ୍ତି । କେଉଁଠାରେ ପଞ୍ଜରଭେଦୀ ଦୀର୍ଘ ନିଶ୍ୱାସ, କାହିଁ ଅବା ଭୟଙ୍କର ପ୍ରଳାପଶବ୍ଦ କିମ୍ବା ଯନ୍ତ୍ରଣାର ହୃଦୟବିଦାରକ ଚିତ୍କାର । ଏପରି ଭୟାବହ ସ୍ଥଳରେ, ଏପରି ନିଦାରୁଣ ଆଶାଶୂନ୍ୟ ଅବସ୍ଥାରେ ପତିତ ସମସ୍ତ

ସହସ୍ର ଆହତ ସୈନିକମାନଙ୍କର ସେବାକାର୍ଯ୍ୟରେ ନିଯୁକ୍ତା କୁଳବାଳାମାନଙ୍କର ନିଃସ୍ୱାର୍ଥ ଦୟା କି ସ୍ୱର୍ଗୀୟ ବ୍ୟାପାର୍ ! ଆହା, ସେମାନେ କି ଅକୁଣ୍ଠିତ ହୃଦୟରେ, ନିଜର ଆତ୍ମୀୟମାନଙ୍କର ନୁହେ, ସମ୍ପୂର୍ଣ୍ଣରୂପେ ଅପରିଚିତ ପରର ପରିଚର୍ଯ୍ୟାରେ ଜୀବନ ଏକାନ୍ତଭାବରେ ଢାଳିଦେଇଥିଲେ ! ସେହି ଆହତ ଓ ପୀଡ଼ିତମାନଙ୍କ ପ୍ରତି କୁମାରୀ ନାଇଟିଙ୍ଗେଲ୍ ଓ ତାଙ୍କର ସହକାରିଣୀମାନେ ମାତୃବତ୍ ସୁକୋମଳ ଓ ସସ୍ନେହ ବ୍ୟବହାର୍ କରି ନିଜ ଜୀବନକୁ ଧନ୍ୟ କଲେ । ସେମାନେ ସହସ୍ର ସହସ୍ର ଲୋକଙ୍କୁ ପ୍ରାଣଦାନ ଓ ସାନ୍ତ୍ୱନାଦାନ କରି, ସହସ୍ର ସହସ୍ର ହୃଦୟର ଗଭୀର ଭକ୍ତି ଓ କୃତଜ୍ଞତା ଅନୁଭବ କରି ଯେତେବେଳେ ସଂଗ୍ରାମଶେଷରେ ସ୍ୱଦେଶକୁ ବାହୁଡ଼ି ଆସିଲେ, ସେତେବେଳେ ସମସ୍ତ ଇଉରୋପ ସେମାନଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧା ପ୍ରକାଶ କରିବାକୁ ଲାଗିଲା । ସ୍ୱୟଂ ମହାରାଣୀ ଭିକ୍ଟୋରିଆ ନିଜ ହସ୍ତରେ କୁମାରୀ ନାଇଟିଙ୍ଗେଲ୍‌ଙ୍କୁ ଅଭିନନ୍ଦନପତ୍ର ପ୍ରଦାନ-କରିଥିଲେ । ଏଥିଉତ୍ତାରେ କୁମାରୀ ନାଇଟିଙ୍ଗେଲ୍ ନାନାବିଧ ଲୋକହିତକର କାର୍ଯ୍ୟରେ ପ୍ରାଣ ଓ ମନ ସମର୍ପଣ କରି ୧୯୧୦ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ ।

## ପ୍ରଶ୍ନ

୧ । ( ନାରୀଜାତିର ସ୍ୱାଭାବିକ ଦୟାର୍ଦ୍ରତା, ) ନୈରାଶ୍ୟମୟ ଦୁଃଖରାଶି, ପଞ୍ଜରଭେଦୀ ଦୀର୍ଘନିଶ୍ୱାସ, ଅକୁଣ୍ଠିତ ହୃଦୟରେ, ଏହି ବାକ୍ୟାଂଶ-ମାନଙ୍କର ବ୍ୟାଖ୍ୟା କର ।

୨ । ସ୍ୱୀକାର, ପରିତୁଷ୍ଟ, ପ୍ରଶମନ, ସମର୍ପଣ, ସହକାରିଣୀ, ଏ ଶବ୍ଦ-ମାନଙ୍କର ବ୍ୟୁତ୍ପତ୍ତି ବୋଲ ।

୩ । କ୍ରିମିୟା ଯୁଦ୍ଧରେ କୁମାରୀ ନାଇଟିଙ୍ଗେଲ୍‌ଙ୍କର ଆର୍ତ୍ତସେବା ବର୍ଣ୍ଣନା କର ।

୪ । ନାରୀଜାତିର କରୁଣା ବିଷୟରେ ଗୋଟିଏ କ୍ଷୁଦ୍ର ପ୍ରବନ୍ଧ ଲେଖ ।

# ଜୀବନ-ଚିନ୍ତା

୧

ରେ ଆତ୍ମନ୍, ନିଦ୍ରା ପରିହରି
ଫେଡ଼ି ଚନ୍ଦ୍ରାର ଲୋଚନ କର କର ନିରୀକ୍ଷଣ
ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି,
ଭେଟିବାକୁ ମୃତ୍ୟୁ-ସିନ୍ଧୁ-କରାଳ-ଲହରୀ ।

୨

କି ବେଗରେ ଯାଉଅଛି ଚଳି
ସେହି ସ୍ରୋତସଙ୍ଗେ ଭସି ଜୀବନର ସୁଖରାଶି,
ଯାହାର ସ୍ମରଣେ ନର ଶୋକଶ୍ୱାସ ଢାଳି
ଅତୀତକୁ ଉଦ୍ବୋଧଇ ବୃଥା ଭାଳି ଭାଳି ।

୩

ସ୍ୱପ୍ନସମ ନିଦ୍ରା-ପାରାବାରେ
କ୍ଷଣକେ ହୁଅଇ ଲୀନ ଗର୍ବ ଦମ୍ଭ ଅଭିମାନ
ସଂସାରର ଆଡ଼ମ୍ବର ବୁଦ୍ବୁଦ ଆକାରେ,
ସକଳ ଗ୍ରାସଇ କାଳ-ମୁଖ ନିର୍ବିଚାରେ ।

୪

ସେ ସିନ୍ଧୁ-ତରଙ୍ଗମୁଖ ପ୍ରତି
ଆକୃଷ୍ଟ ଅଦୃଶ୍ୟ ଭାବେ ବହିଉଅଛି ସବୁ ଭବେ
ମୃଦୁ ନିର୍ଝରଣୀ ମହାବେଗା ସ୍ରୋତସ୍ୱତୀ
ସୁହୀନ ମନୁଷ୍ୟ ମହାଯଶା ମହୀପତି ।

୫

ଭବସିନ୍ଧୁ ମାୟା ଶୈଳମୟ
ସମସ୍ତ ଛଳନାପୂର୍ଣ୍ଣ; ସେ ଶୈଳେ ସର୍ବଦା ଚୂର୍ଣ୍ଣ
ହୁଅଇ ଆଶାର ତରୀ, କାମନାନିଚୟ
ଚଞ୍ଚଳ ସତତ; ତତ୍ତ୍ୱ ନୈରାଶ୍ୟଆଳୟ ।

୬

ଜଗତର ଲୋଚନନନ୍ଦନ
ଯୁବତୀର ରକ୍ତାଧର,                    ରମ୍ୟ ଜ୍ୟୋତି ନୟନର
ସ୍ୱର୍ଣ୍ଣିଘନସମ ବକ୍ଷ ଶ୍ରୁ ପଦ୍ମାନନ
ଇନ୍ଦ୍ରଧନୁଶୋଭସମ ପଳାନ୍ତି ବହନ ।

୭

ଯୁବକର ତେଜ ବୀର୍ଯ୍ୟ ବଳ,
ପ୍ରୌଢ଼ର ଚତୁର ଜ୍ଞାନ                    ସୁକୌଶଳ କାର୍ଯ୍ୟମାନ
କାଳର ପ୍ରଭାବେ ଦିନେ ହୋଇବ ବିଫଳ,
କସ ଏ ଜଗତେ କହ ସ୍ଥିର ଅଚଞ୍ଚଳ ।

୮

ଧନ ମାନ ଯଶ ଆଦି ଯାହା.
ଭାଗ୍ୟଦେବୀ-ପ୍ରସାଦରେ                    ଏ ଭବେ ଲଭନ୍ତି ନରେ
କାଳ-ଚକ୍ର-ଆବର୍ତ୍ତନେ କେ ବେଗରେ ଆହା
ପଳାନ୍ତିରେ ଅନୁସରି ନକ୍ର ନଜ ରାହା ।

୯

ବିମୋହନ କାମନା ବିଳାସ
ଚାଣେ ମନ ମାୟାଯନ୍ତ୍ରେ,                    ଭୁଲାଏ କପଟ ମନ୍ତ୍ରେ,
କୌଶଳ ଜନ୍ମାଇ ଚିତ୍ତେ କ୍ଷଣିକ ଉଲ୍ଲାସ
ପ୍ରଫୁଲ୍ଲ ବିପ୍ଳବକୁ କରଇ ପ୍ରକାଶ ।



ଆତ୍ମୁଶାଜ୍ୟେ ସେ ଭୀମ ବିପ୍ଳବେ
ଧର୍ମ୍ମର ପୁଣ୍ୟ ରାଜତ୍ୱ,                    ପ୍ରଜ୍ଞାର ମହତ ତତ୍ତ୍ୱ
ହୁଏ ପରାହତ, ପାପ ଗର୍ଜ୍ଜଇ ଭୈରବେ,
ପଳାୟନ କରେ ଶାନ୍ତି ସେହି ଉପଦ୍ରବେ ।

୧୧

ମୁକୁଟମଣ୍ଡିତ ରାଜଶିର
ନୁହଇ ଶାନ୍ତି-ଆସ୍ପଦ, ଆଶଙ୍କା ଭୟ ବିପଦ
ନିରନ୍ତର ରାଜ-ମର୍ମ କରଇ ଅସ୍ଥିର
ଆଜ ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର ।

୧୨

ଏ ସଂସାରେ ନାହିଁ ସୁଖ ଶାନ୍ତି,
ଅହଂକାର ଦ୍ୱେଷ ରୋଷ ଲୋଭ ମୋହ ଅସନ୍ତୋଷ
ଦୁଷ୍ଟ ରିପୁକୁଳ ଘୋର ଅନର୍ଥ ଘଟାନ୍ତି,
ପାପର ଭୀଷଣାବର୍ତ୍ତେ ନରେ ନିକ୍ଷେପନ୍ତି ।

୧୩

କାହିଁ ଶାନ୍ତି କାହିଁ ନିତ୍ୟ ସୁଖ
ଯାହା ଲଭିବାର ଲାଗି, ଅଛୁ ଅବିରତ ଜାଗି
ଚତୁର୍ଦ୍ଦିଗେ ଆଶାଦୀପ ଉଜ୍ଜ୍ୱଳ ମୟୂଖ,
କାହିଁ ଗଲେ ପାସୋରିବ ମୃତ୍ୟୁ ପାପ ଦୁଃଖ ।

୧୪

ରେ ହୃଦୟ ନ ହୁଅ କାତର,
ସଂସାରର ବିଡ଼ମ୍ବନା ପାପ-ସନ୍ତାପ-ଯାତନା
ବିପଦ-ଦୁର୍ଦ୍ଦିନ-ତମ ଘୋର ଭୟଙ୍କର
ନିରେଖି ନିରାଶାବଶେ ନ ହୁଅ ଜର୍ଜ୍ଜର ।

୧୫

ଧର ଧୈର୍ଯ୍ୟ ଘେନରେ ସାନ୍ତ୍ୱନା
ଅଛି ସେହି ମହାଧନ, ସେ ମହା ସ୍ୱର୍ଗରତନ
ସେ ଅମୃତ ମହୌଷଧ ଯାହାର କାମନା
ଆଶା ଜାଗ୍ରତ ସତତ କରେ ଉଦ୍ଦୀପନା ।

୧୬

ସ୍ଥିର ହୁଅ ରେ ଚଞ୍ଚଳ ମନ,
ଧେନ ମହାତତ୍ତ୍ୱ ଦୀକ୍ଷା    ଜୀବର ପରମ ଶିକ୍ଷା
ତେବେବରେ ଲଭିବୁ ସେହି ପ୍ରାଣାରାମ ଧନ
ଆକୁଳ ହୃଦୟେ କରୁ ଯାର ଅନ୍ୱେଷଣ ।

୧୭

ଧୂଳିର ଏ ମର କଳେବର,
(ଅହୋ ମାନବଜୀବନ    କି ଅଦ୍ଭୁତ ଉଦ୍ଭାବନ)
ବିରାଜେ ଅମର ଆତ୍ମା ଦିବ୍ୟ ସୌନ୍ଦର୍ଯ୍ୟରେ
କମଳ ଶୋଭଇ ଯଥା ପଙ୍କମୟ ସରେ ।

୧୮

ଏ ସଂସାର ଅନ୍ଧକାର ସ୍ଥାନ,
ଅନ୍ଧାରେ ହେଲେ ଜଡ଼ିତ    ନ ହୁଅଇ ବିକସିତ
ଜୀବାତ୍ମାକୁସୁମ ଏଥି, ହୁଏ ମ୍ରିୟମାଣ
ହରାଇଣ ଦିବ୍ୟ ଶୋଭା ପ୍ରେମ ଭକ୍ତି ଜ୍ଞାନ ।

୧୯

ଦିବାକରେ ନିରେଖି ଗଗନେ
ହର୍ଷେ ଫୁଟେ ପଦ୍ମଫୁଲ,    ତେସନ ଆତ୍ମା ପ୍ରଫୁଲ୍ଲ
ଅନନ୍ତ ମଙ୍ଗଳାଳୟ ବିଭୁ-ଦରଶନେ,
ପୁଣ୍ୟର ଉପନ ଯେହ୍ନୁ ପାପର ଭୁବନେ ।

୨୦

ଯହିଁ ଦେବେ ଭୁଞ୍ଜନ୍ତି ଅମୃତ,
ବିଭୁ-ପାଦପଦ୍ମପାଶେ    ପୁଣ୍ୟ ଜ୍ୟୋତିର୍ମୟ ବାସେ
ରୋଗ ପାପ ମୃତ୍ୟୁ ଆଦି ଯହିଁ ପରାଭୂତ,
ସେ ସୁଧାମ ଲାଗି ଆତ୍ମା ସଦା ପିପାସିତ ।

୨୧

ଏ ପିପାସା କୁହଇ କବାର
ଅସାର ସଂସାରଜଳେ, ରଥୁଚଯ୍ନ କୋଳାହଲେ
ନୋହେ ନିବାପିତ କେବେଁ ; ଏକା ଧର୍ମବାର
ଶମଇ ଏ ମହା ଅଗ୍ନି ଅମୃତ ସଞ୍ଚାର ।

୨୨

ତେବେ ଅଛରେ ଅସ୍ଥିର ହୃଦଯ୍
ତ୍ୟଜ କୁତ୍ସିତ ବାସନା କର ତାଙ୍କ ଆରାଧନା
ଧର୍ମରାଜ ପ୍ରଭୁ ଯେହୁ ମଙ୍ଗଳଆଳଯ୍,
ଅମୃତ-ଜୀବନ-ଦାତା ବ୍ରହ୍ମାଣ୍ଡ-ଆଶ୍ରଯ୍ ।

୨୩

ପରିହର ପାପପ୍ରଲୋଭନ
ଉଜ୍ଜ୍ୱଳ କର ବିଶ୍ୱାସ, ସ୍ୱାର୍ଥ ଅହଙ୍କାର ନାଶ,
କରରେ ହୃଦଯ୍ାକାଶ ନିର୍ମଳ ବହନ,
ତେବେ ରେ ଲଭିବୁ ଧର୍ମ-ରସ ଆସ୍ୱାଦନ ।

୨୪

ପ୍ରୀତମଯ୍ ଜୀବନ୍‌ରତନ
ଦେବେ ତୋତେ ପରମେଶ, ତାଙ୍କର ପବିତ୍ରାଦେଶ
ନିଃସ୍ୱାର୍ଥ ପବିତ୍ର ଚତ୍ତେ କରରେ ସାଧନ ।
ଜଗତର ହିତ ଅର୍ଥେ ଦିଅରେ ଜୀବନ ।

୨୫

ହେ ଈଶ୍ୱର ପତିତ-ପାବନ,
ପ୍ରାଣାରାମ ନିରଞ୍ଜନ, ଭଯ୍-ବିଘ୍ନ-ବିନାଶନ,
ତୁମ୍ଭେ ପ୍ରଭୁ ସନ୍ତାପିତ ପ୍ରାଣର ଚନ୍ଦନ,
ସଂସାର-ବିଷାକ୍ତ-ନେତ୍ରେ ତୁମ୍ଭେ ହେ ଅଞ୍ଜନ ।

୨୭

ଆସ ନାଥ ଅଗତିର ଗତି,
ତୁମ୍ଭ ବିନା ଏ ସଂସାରେ ମରଇ ମୁଁ ହାହାକାରେ
ତାର ମୋତେ ମହାପ୍ରଭୁ ଦେଇଣ ସୁମତି,
ଅନନ୍ତ ଦୟା ତୁମ୍ଭର, ଅନନ୍ତ ଶକତି ।

ପ୍ରଶ୍ନ

୧ । ପ୍ରଥମ ଶ୍ଳୋକରେ 'ଭେଟିବାକୁ', ଦ୍ୱିତୀୟରେ 'ଉଦ୍ବୋଧଇ', ଅଷ୍ଟମରେ 'ଯାହା' ଓ 'ପଳାନ୍ତି', ତ୍ରୟୋଦଶରେ 'ଆଶାଦୀପ', ପଞ୍ଚଦଶରେ 'କାମନା', ଏହିପଦମାନଙ୍କର ଅନ୍ୱୟ କର ।

୨ । ଗର୍ବ, ଦମ୍ଭ ଓ ଅଭିମାନ, ଏହି ଶବ୍ଦମାନଙ୍କର ଅର୍ଥଭେଦ ବୁଝାଇଦିଅ ।

। ଜୀବନ ସହିତ ସ୍ରୋତର ଓ କାଳର ସହିତ ସିନ୍ଧୁର ଉପମାକୁ ବିସ୍ତାରିତରୂପେ ଓ ସୁସ୍ପଷ୍ଟରୂପେ ବୁଝାଇଦିଅ ।

୪ । ଋପୁକୁଳବିପ୍ଳବ, ପ୍ରଜ୍ଞାର ମହିତ ତତ୍ତ୍ୱ, ପାପର ଭୀଷଣାବର୍ତ୍ତ, ଧୂଳିର ଏ ମର କଳେବର, ଏ ବାକ୍ୟାଂଶଗୁଡ଼ିକର ବ୍ୟାଖ୍ୟା କର ।

୫ । 'ଜୀବନ-ଚିନ୍ତା' କବିତାର ସାର କଥା ସଂକ୍ଷେପରେ ଲେଖ ।

୬ । ଏହି କବିତାରୁ ରୂପକ-ଅଲଙ୍କାରର ଉଦାହରଣ ଦେଖାଇଦିଅ ।

## ଆଗ୍ନେୟଗିରି

ଆଗ୍ନେୟଗିରିର ଅଗ୍ନ୍ୟୁତ୍ପାତ ଦେଖି ସେଥିର ଭୟଙ୍କରତା ଅନୁଭବ କରିବାର ସୁବିଧା ଭାରତବର୍ଷରେ ନାହିଁ । ଭାରତବର୍ଷରୁ ବହିର୍ଗତ ହୋଇ ବର୍ଷାନ୍ତରରେ ବିଚରଣ ନ କଲେ ଅଗ୍ନ୍ୟୁତ୍ପାତର ଭୀଷଣତା ଉପଲବ୍ଧ ହୋଇପାରିବ ନାହିଁ । ଦର୍ଶନୀୟ ପଦାର୍ଥ ଭାରତବର୍ଷରେ ପ୍ରଚୁର ଅଛି । ଅକୂଳ ମହାର୍ଣ୍ଣବର ଉତ୍ତୁଙ୍ଗ ଲହରୀମାନେ ଭାରତଭୂମିର ଚରଣ ଧୌତ କରୁଅଛନ୍ତି, ତୁଷାରୋଜ୍ଜ୍ୱଳ ହିମାଳୟ ଭାରତଭୂମିର ସୀମାନ୍ତରୂପେ ବିରାଜିତ ଅଛି । ସ୍ୱଚ୍ଛୋଦକନିର୍ଝରମାନଙ୍କ

ପତନଶବ୍ଦ ଭାରତର ନିବିଡ଼ ଓ ନିର୍ଜ୍ଜନ ଅରଣ୍ୟାନୀମାନଙ୍କୁ ଝଙ୍କାରିତ କରୁଅଛି । ଭୀଷଣ ଦୂରବାହିନୀ ନଦୀମାନେ ବହୁଦୂରବ୍ୟାପୀ ଭାରତଦେହକୁ ଉଜ୍ଜ୍ୱଳ ଶ୍ୟାମଳ-ବସନରେ ଶୋଭିତ କରୁଅଛନ୍ତି । ମାତ୍ର ଆଗ୍ନେୟଗିରି ଭାରତବର୍ଷରେ ନାହିଁ । ଆଣ୍ଡିଜ୍‌ପର୍ବତ ଉଚ୍ଚତାବିଷୟରେ ହିମାଳୟର କନିଷ୍ଠ ଅଟେ, ମାତ୍ର ବୈଚିତ୍ର୍ୟରେ ଜ୍ୟେଷ୍ଠ । ଆଗ୍ନେୟଗିରି ସେହି ବୈଚିତ୍ର୍ୟର ପ୍ରଧାନ ହେତୁ ।



ଆଗ୍ନେୟଗିରି

ଆମ୍ଭେମାନେ କେବେହେଁ ଅଗ୍ନ୍ୟୁତ୍ପାତ ଦେଖି ନାହୁଁ । ସୁତରାଂ ତାହା କେତେଦୂର ଭୟଙ୍କର ବ୍ୟାପାର ଏହା ଆମ୍ଭମାନଙ୍କର ଅନୁଭବକୁ ଆସେ ନାହିଁ । ଅଗ୍ନ୍ୟୁତ୍ପାତଠାରୁ ଭୂମିକମ୍ପର ମାରାତ୍ମକତା ଅଧିକ ଅଟଇ । ମାତ୍ର ଭାରତ-ବର୍ଷରେ ସେପରି ମାରାତ୍ମକ ଭୂମିକମ୍ପ ବିରଳ । ଆମ୍ଭେମାନେ ସେପରି ମହାର୍ଘ ବହୁଦର୍ଶିତାର ଆକାଙ୍କ୍ଷୀ ନୋହୁଁ । ବିଦେଶୀୟ ଦର୍ଶକମାନଙ୍କର ତଦ୍‌ବିଷୟକ ବର୍ଣ୍ଣନା ପଢ଼ି ଭୀତ ହେବାର ଆମ୍ଭମାନଙ୍କ ପକ୍ଷରେ ବିଶେଷ କଷ୍ଟକର ଅଟେ ।

କ୍ଷୁଦ୍ର ଆଗ୍ନେୟ ଶୃଙ୍ଗମାନଙ୍କର ଉଦ୍‌ଗମନ ଯେମନ୍ତ ମୁହୁର୍ମୁହୁଃ ହୁଏ, ବୃହତ୍

ଆଗ୍ନେୟ ଶୃଙ୍ଗମାନଙ୍କର ସେମନ୍ତ ନୁହେ । କ୍ଷୁଦ୍ର ପର୍ବତର ନଳୀ ଦେଇ ଅନ୍ତର୍ଭୂମି ତରଳାଗ୍ନି ଅନାୟାସରେ ଆସିପାରେ । ମାତ୍ର ବୃହତ୍ ପର୍ବତର ନଳୀ ଦେଇ ଆସିବାକୁ ବେଶି ବେଗ ଓ ବଳର ପ୍ରୟୋଜନ ହୁଏ । ଲିପାରିଦ୍ୱୀପରେ ଷ୍ଟ୍ରମ୍ବୋଲିନାମକ ଯେଉଁ ପର୍ବତ ଅଛି ତାହା ପୁରାକାଳରେ ଫିନିସୀୟ ନାବିକମାନଙ୍କର ଦୀପସ୍ତମ୍ଭସ୍ୱରୂପ ହୋଇଥିଲା ଏବଂ ଆଧୁନିକ ସମୟରେ ମଧ୍ୟ ଇଉରୋପୀୟ ପୋତମାନଙ୍କୁ ସେହିପରି ଖଟୁଅଛି । ଅନ୍ୟାନ୍ୟ ବୃହତ୍ ଆଗ୍ନେୟଶୃଙ୍ଗ ସହିତ ତୁଳନାରେ ଷ୍ଟ୍ରମ୍ବୋଲି ଅତ୍ୟନ୍ତ ନିକୃଷ୍ଟ ଅଟେ । ପ୍ରକୃତିର ନିୟମ ଏହି, କ୍ଷୁଦ୍ର ସର୍ପର ବିଷ ଉତ୍କଟତର । କ୍ଷୁଦ୍ର ଆଗ୍ନେୟ ଶୃଙ୍ଗର ଉତ୍ପାତ ଭୀଷଣତର । ଆଣ୍ଡିଜ୍ ପର୍ବତର ଉଚ୍ଚ ଶୃଙ୍ଗମାନ ଆଗ୍ନେୟ ଅଟନ୍ତି, ମାତ୍ର ସେମାନଙ୍କର ଉତ୍ପାତ ବହୁଦିନରେ ଥରେଲେଖାଏଁ ହୁଏ ।

ଆଣ୍ଡିଜ୍ ପର୍ବତର ଅଗ୍ନ୍ୟୁତ୍ପାତ ଅତି ବିସ୍ମୟକର । ଉତ୍ପାତବେଳେ ଶିରଃସ୍ଥିତ ତୁଷାରରାଶି ତରଳ ହୋଇଯାଏ । ଉପଳ ଓ ତୁଷାରଖଣ୍ଡ-ମିଶ୍ରିତ ବେଗବାନ୍ ସ୍ରୋତ ଭୟଙ୍କର ଶବ୍ଦରେ ପତିତ ହୋଇ ପ୍ରଶାନ୍ତ ମହାସାଗରର ନୀଳ ଲହରୀମାନଙ୍କୁ ପ୍ରତିଘାତ କରେ । ଆଗ୍ନେୟଶୃଙ୍ଗର ଉଜ୍ଜ୍ୱଳ ଛବି ସାଗର ବକ୍ଷକୁ ଉଜ୍ଜ୍ୱଳ କରେ ।

ଦୂରରୁ ଦେଖିଲେ ଆଗ୍ନେୟପର୍ବତ ଧୂମୋଦ୍ଗାର-ଯୁଗୀବର ପ୍ରତିଭାତ ହୁଏ । ସମୀପକୁ ଗଲେ ସେଥିର ଭୟଙ୍କର ଓ ଉତ୍କଟ ମୂର୍ତ୍ତି ହୃତ୍କମ୍ପ ଉପୁଜାଇ ଦିଏ । ଉଷ୍ଣବାଷ୍ପରେ ଶ୍ୱାସରୋଧ ହେବାର ଆଶଙ୍କା ହେଉଥାଏ । ଗ୍ରୀଷ୍ମରେ ଦେହ ଜଳଗଳାପ୍ରାୟ ବୋଧ ହୁଏ । ଶୃଙ୍ଗମୁଖ ରୌରବମୁଖପ୍ରାୟ ଦିଶେ । ଓରିଜାବାନାମକ ଆମେରିକାରେ ଗୋଟିଏ ଭୟଙ୍କର ଆଗ୍ନେୟଶୃଙ୍ଗ ଅଛି । ତାହାର ମୁଖପରିମାଣ ପ୍ରାୟ ୧୬୦୦୦ ହସ୍ତ ହେବ । ସେହି ମୁଖଭିତରକୁ ଅନାଇଲେ ଗଭୀରେ କେଉଁଠାରେ ହ୍ରଦ, କେଉଁଠାରେ ନିବିଡ଼ ଅରଣ୍ୟ ଲକ୍ଷିତ ହୁଏ ।

ମେକ୍ସିକୋ ଦେଶରେ ପପୋକାଟାପିଟେଲ ନାମକ ଗୋଟିଏ ଆଗ୍ନେୟଶୃଙ୍ଗ ଅଛି । ଏହି ଶୃଙ୍ଗ ପ୍ରଶାନ୍ତ ଓ ଆଟଲାଣ୍ଟିକ ମହାସାଗର ଉଭୟର ମଧ୍ୟବର୍ତ୍ତୀ । ଉଭୟ ସାଗରବାହୀ ନାବିକମାନଙ୍କର ଦୃଷ୍ଟିଗୋଚର ହୁଏ । ଏହି

ପର୍ବତମୁଖର ବ୍ୟାସ ପ୍ରାୟ ୫୦୦୦ ଫିଟ୍ । ସମ୍ପ୍ରତି ଏଥିରେ ଆଉ ଅଗ୍ନ୍ୟୁତ୍ପାତ ହେଉ ନାହିଁ । ଏହି ଗିରିର ଶିଖର ତୁଷାରାବୃତ ଅଟେ । ଏହାର ଗର୍ଭର ଗଭୀରତା ପ୍ରାୟ ୧୦୦୦ ଫିଟ୍ । ମେକ୍ସିକୋବିଜୟୀ କର୍ଟେଜ ବାରୁଦ ପ୍ରସ୍ତୁତ କରିବାକୁ ଏହି ପର୍ବତରୁ ଗନ୍ଧକ ଆହରଣ କରିଥିଲେ ।

ମାସୟାନାମକ ଆଗ୍ନେୟଗିରିର ଗର୍ଭ ଅଦ୍ଭୁତ ଭୟଙ୍କର । ଜଣେ ପର୍ଯ୍ୟଟକ ଲେଖିଅଛନ୍ତି ଏହାର ଗର୍ଭ ଏତେ ପ୍ରଶସ୍ତ ଯେ, ତହିଁରେ ସହସ୍ର ଲୋକଙ୍କ ଆଗରେ ଏକଶତ ଅଶ୍ୱାରୋହୀ ଅବଲୀଳାକ୍ରମେ ଘୋଡ଼ା ଦୌଡ଼ାଇ ପାରିବେ । ଆମେରିକାର ଆଦିମନିବାସୀମାନେ ଏହାର ଭୟାବହ ଅଗ୍ନ୍ୟୁଦ୍ଗମନ ଦେଖି ଏହାକୁ ନରକବିଶେଷ ମଣିଥିଲେ ।

ଜାବାଦ୍ୱୀପରେ ଅନେକ ଆଗ୍ନେୟପର୍ବତ ଅଛି । ସେମାନଙ୍କର ଭୀଷଣତା ହେତୁରୁ ତତ୍ରତ୍ୟ ଲୋକେ ଜାବାଦ୍ୱୀପକୁ ବ୍ରହ୍ମାଣ୍ଡବିନାଶକାରୀ ରୁଦ୍ରରୂପୀ ମହାଦେବଙ୍କର ଅଧିଷ୍ଠାନସ୍ଥଳ ବୋଲି କଳ୍ପନା କରି ସେହି ଗିରିମାନଙ୍କ ଗର୍ଭମଧ୍ୟରେ ଅନେକ ମନ୍ଦିର ନିର୍ମାଣ କରିଥିଲେ । ସମ୍ପ୍ରତି ମଧ୍ୟ କେତେକ ଶିବୋପାସକ ଏହି ପର୍ବତ ସମୀପରେ ବାସ କରି ପ୍ରଳୟକାରୀଙ୍କର କୋପଶାନ୍ତି ନିମନ୍ତେ ନାନା ଖାଦ୍ୟଦ୍ରବ୍ୟ ନୈବେଦ୍ୟରୂପେ ଗିରିଗର୍ଭରେ ନିକ୍ଷେପ କରନ୍ତି । ସମୟ ସମୟରେ ମନୁଷ୍ୟ-ବଳି ମଧ୍ୟ ଅର୍ପିତ ହୁଏ । ପ୍ରାୟ ତିନଶତବର୍ଷ ପୂର୍ବେ ଯେତେବେଳେ ଜାପାନସାମ୍ରାଜ୍ୟସ୍ଥ ନୂତନ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ନିହତ ହେଲେ, ସେତେବେଳେ ସେହି ଧର୍ମାବଲମ୍ବୀମାନଙ୍କ ମଧ୍ୟରୁ ଶହ ଶହ ମନୁଷ୍ୟ ଆନ୍‌ସେନ୍ ନାମକ ଆଗ୍ନେୟ ଗିରିର ଭୈରବ ଗର୍ଭରେ ବଳିସ୍ୱରୂପ ନିକ୍ଷିପ୍ତ ହୋଇଥିଲେ ।

ପୃଥିବୀରେ ଏପ୍ରକାର ଅନେକ ଦେଶ ଅଛି, ଯହିଁରେ ଏକ ସମୟରେ ପ୍ରଚଣ୍ଡ ଅଗ୍ନ୍ୟୁତ୍ପାତ ସଂଘଟିତ ହେଉଥିଲା, ମାତ୍ର ସମ୍ପ୍ରତି ସେଠାରେ ସମ୍ପୂର୍ଣ୍ଣ ଶାନ୍ତି ବିରାଜି କରୁଅଛି । ଯେଉଁସ୍ଥାନରେ ଭୟଙ୍କର ତରଳାଗ୍ନି ସ୍ରୋତ ପ୍ରବାହିତ ହେଉଥିଲା, ବର୍ତ୍ତମାନ ସେଠାରେ ଉଦ୍ଭିଜ୍ଜଲକ୍ଷ୍ମୀ ଉଜ୍ଜ୍ୱଳ ଶ୍ୟାମଳବସନ ଧାରଣ କରି ଜନମନ ହରଣ କରୁଅଛି । ଯେଉଁ ଭୀଷଣ ପର୍ବତମାନ ପୂର୍ବକାଳରେ ଅଗ୍ନି ରାଶି ଉଦ୍ଗମନ କରି ନିକଟସ୍ଥ ନଗରୀ ଓ ପଲ୍ଲିମାନଙ୍କର ବିନାଶ-

ସାଧନ କରୁଥିଲା, ସମ୍ପ୍ରତି ସେମାନଙ୍କର ଗର୍ଭରେ ଶ୍ୟାମଳ ଦୁର୍ବାଦଳ ପରିବର୍ଦ୍ଧିତ ହେଉଅଛି । ଫ୍ରାନ୍ସଦେଶୀୟ ପର୍ବତମାନଙ୍କ ମଧ୍ୟରେ ଏପରି ଦୃଶ୍ୟ ନେତ୍ର-ଗୋଚର ହୁଏ । ବର୍ତ୍ତମାନ ଧରାପୃଷ୍ଠରେ ଅନେକ ପ୍ରଚଣ୍ଡ ଆଗ୍ନେୟଗିରି ଅଛି । ତହିଁରୁ ଯେ କେବଳ ଅଗ୍ନି ଉଦ୍ଗୀରିତ ହୁଏ ଏମନ୍ତ ନୁହେ, ମଧ୍ୟେ୨ ସେମାନଙ୍କର ଭୟଙ୍କର ଉତ୍ପାତ ଘଟିଥାଏ । ବିଖ୍ୟାତ ଭୂତତ୍ତ୍ୱବିତ୍ ହମ୍ବୋଲ୍ଡ୍ ସାହେବ ଏପରି ୨୨୯ ଗୋଟି ପର୍ବତର ଉଲ୍ଲେଖ କରିଅଛନ୍ତି । ପୁଣି କେହି୨ କହନ୍ତି ଯେ ପୃଥିବୀରେ ସର୍ବସୁଦ୍ଧା ୨୭୦ ଗୋଟି ଅଗ୍ନି-ଉଦ୍ଗମନକାରୀ ପର୍ବତ ଅଛି ।

ଅଗ୍ନ୍ୟୁତ୍ପାତର ଆରମ୍ଭ ସମୟରେ ପର୍ବତକମ୍ପକାରୀ ଭୀଷଣ ଗର୍ଜନଶବ୍ଦ କର୍ଣ୍ଣକୁ ବଧିର କରେ । ଅଳ୍ପକାଳ ଉତ୍ତାରେ ଆକାଶ ଧୂମ, ଭସ୍ମ, ଅଗ୍ନି ଓ ବୃହତ୍ ଅଗ୍ନିମୟ ଶିଳାରାଶିରେ ପରିବ୍ୟାପ୍ତ ହୁଏ । ୧୮୭୭ ଖ୍ରୀଷ୍ଟାବ୍ଦରେ ଆମେରିକାସ୍ଥ କଟୋପାକ୍ସି ପର୍ବତର ଯେଉଁ ଉତ୍ପାତ ହୋଇଥିଲା, ତହିଁରେ ପ୍ରାୟ ୩୫୦୦ ଘନଫୁଟ ଆୟତନର ପ୍ରସ୍ତର ଗିରିଗର୍ଭରୁ ଅନ୍ତରୀକ୍ଷକୁ ନିକ୍ଷିପ୍ତ ହୋଇଥିଲା । ଅଗ୍ନ୍ୟୁତ୍ପାତ ସମୟରେ ଭୀଷଣ ତରଳଧାତୁସ୍ରୋତ ଗିରିଅଙ୍ଗରେ ପ୍ରବାହିତ ହୋଇ ଅଗ୍ନିମୟ ପ୍ରବାହରୂପେ ପ୍ରତୀୟମାନ ହୁଏ ।

ଗଳିତଧାତୁସ୍ରୋତ ଉଚ୍ଚ ପର୍ବତସମୂହର ନଳୀବାଟେ ଅନାୟାସରେ ଆସି ପାରେ ନାହିଁ ; କାରଣ ସେଥିପାଇଁ ଅପରିମେୟ ବେଗ ଓ ବଳର ପ୍ରୟୋଜନ ହୁଏ । ଏଣୁ ଅନେକ ଉଚ୍ଚ ପର୍ବତରେ ଦେଖାଯାଏ ଯେ ଧାତୁ-ସ୍ରୋତ ପର୍ବତପାର୍ଶ୍ୱ ଭେଦକରି ଅଭିନବ ଆଗ୍ନେୟଶୃଙ୍ଗ ଉତ୍ପାଦନ କରିଦିଏ । ଏଟ୍ନା ପର୍ବତର ପାର୍ଶ୍ୱଦେଶରେ ଏପରି ଅନେକଗୁଡ଼ିଏ ଆଗ୍ନେୟଗିରି ଦୃଷ୍ଟି-ଗୋଚର ହୁଏ । ଏମାନଙ୍କର ଅଗ୍ନ୍ୟୁତ୍ପାତ ଅତି ଭୟଙ୍କର ଓ ପ୍ରଚଣ୍ଡ । ବିସୁ-ବିୟସ୍ ପର୍ବତ ଅତି କ୍ଷୁଦ୍ର ଓ ଅଳ୍ପୋଚ୍ଚ, ମାତ୍ର ଏହାର ଅଗ୍ନ୍ୟୁତ୍ପାତର ଭୀଷଣତା ନ୍ୟୂନ ନୁହେ । ଏହି ପର୍ବତର ଉତ୍ପାତରେ ହରକୁଲେନିୟମ୍ ଓ ପମ୍ପିଆଇ ନାମ୍ନୀ ଦୁଇଗୋଟି ସମୃଦ୍ଧିଶାଳିନୀ ନଗରୀ ବିଲୁପ୍ତ ହୋଇଥିଲା । ଏହି ପ୍ରୋଥିତ ନଗରୀ-ଦ୍ୱୟ ସମ୍ପ୍ରତି ଆବିଷ୍କୃତ ହୋଇଅଛି । କେତେକେତେବେଳେ ଦେଖାଯାଏ ଯେ ଗଳିତଧାତୁସ୍ରୋତ ପର୍ବତମୁଖରୁ ବାହାରି, ଉପତ୍ୟକାମଧ୍ୟରେ ଅତି ସୁଗମ୍ୟ

ମାର୍ଗମାନ ପ୍ରସ୍ତୁତ କରିଦିଏ, ମାତ୍ର ଏହା ସର୍ବତ୍ର ଅଥବା ସର୍ବଦା ଦୃଷ୍ଟିଗୋଚର ହୁଏ ନାହିଁ ।

ଅଗ୍ନ୍ୟୁତ୍ପାତ ସମୟରେ କେତେକ ଆଗ୍ନେୟପର୍ବତରୁ ରାଶିରାଶି କର୍ଦ୍ଦମ ଓ ମତ୍ସ୍ୟ ନିର୍ଗତ ହେବାର ଦେଖାଯାଏ । ବୋଧ ହୁଏ ଆଗ୍ନେୟଗିରିର ନଳୀସଙ୍ଗରେ କୌଣସି ଗୁପ୍ତ ଜଳହ୍ରଦର ସଂଯୋଗ ଥିବାରୁ ଏପରି ଘଟିଥାଏ । ସମୁଦ୍ର-ମଧ୍ୟରେ ମଧ୍ୟ ଅନେକ ଆଗ୍ନେୟଗିରି ଅଛି । ବୋଧ ହୁଏ ସାମୁଦ୍ରିକ ଅଗ୍ନ୍ୟୁତ୍ପାତ ଦେଖି ପ୍ରାଚୀନ ହିନ୍ଦୁଗ୍ରନ୍ଥକର୍ତ୍ତାମାନେ ପୁରାଣସମୂହରେ ବାଡ଼ବାଗ୍ନିର ଉଲ୍ଲେଖ କରିଥିଲେ । ଖ୍ରୀଷ୍ଟୀୟ ୧୮୬୬ ସାଲରେ ଗ୍ରୀସୀୟ ଦ୍ୱୀପପୁଞ୍ଜର ନିକଟବର୍ତ୍ତୀ ସଂଟୋରିନ ଉପସାଗରରେ ଗୋଟିଏ ଭୟଙ୍କର ଅଗ୍ନ୍ୟୁତ୍ପାତ ଘଟିଥିଲା । ସେହି ଉତ୍ପାତ ଉତ୍ତାରେ ୧୦୦୦ ଫିଟ୍ ପରିଧିବିଶିଷ୍ଟ ଗୋଟିଏ ନୂତନ କ୍ଷୁଦ୍ର ଦ୍ୱୀପ ଦୃଷ୍ଟିଗୋଚର ହେଲା ।

ଅଗ୍ନ୍ୟୁତ୍ପାତର କାରଣ ବିଷୟରେ ଅନେକ ବିଭିନ୍ନ ମତ ପ୍ରଚରିତ ହୋଇଅଛି । ଆମ୍ଭେମାନେ ତନ୍ମଧ୍ୟରୁ କେତୋଟି ନିମ୍ନରେ ଉଦ୍ଧୃତ କରୁଅଛୁଁ ।

ଅଷ୍ଟାଦଶ ଶତାବ୍ଦୀରେ ପଣ୍ଡିତମାନଙ୍କର ବିଶ୍ୱାସ ଥିଲା ଯେ ଆଗ୍ନେୟ ପର୍ବତର ଗର୍ଭରେ ଗନ୍ଧକ ଓ ଲୌହ ଅଛି । ସେତେବେଳେ ଗନ୍ଧକ ଓ ଲୌହଚୂର୍ଣ୍ଣ ଜଳସଙ୍ଗେ ମିଶି ରାସାୟନିକ ବଳର ଅଧୀନ ହୁଏ, ସେତେବେଳେ ଅଗ୍ନ୍ୟୁତ୍ପାତ ସଂଘଟିତ ହୁଏ । ସର୍ହମ୍ଫ୍ରି ଡେଭି ନାମରେ ଜଣେ ପ୍ରସିଦ୍ଧ ପଣ୍ଡିତ ସ୍ଥିର କରିଥିଲେ ଯେ ଆଗ୍ନେୟଗିରି ଗର୍ଭରେ ପୋଟାସିୟମ୍ ଏବଂ ସୋଡ଼ିଅମ୍ ନାମକ ଦୁଇଗୋଟି ପଦାର୍ଥ ଅଛି । ଏମାନଙ୍କ ସଙ୍ଗରେ ଜଳ ମିଶ୍ରିତ ହେଲେ ରାସାୟନିକ କାର୍ଯ୍ୟଦ୍ୱାରା ଅଗ୍ନି ସମୁତ୍ପାଦିତ ହୁଏ ।

ଆଧୁନିକ ଅନୁସନ୍ଧାନଦ୍ୱାରା ଉପରଲିଖିତ ମତସମୁଦାୟ ଅପ୍ରାକୃତ ବୋଲି ପ୍ରମାଣିତ ହୋଇଅଛି । ଆଧୁନିକ ଭୂତତ୍ତ୍ୱବିତ୍‌ମାନେ ସ୍ଥିର କରିଅଛନ୍ତି ଯେ ପୃଥିବୀର କୈନ୍ଦ୍ରିକ ଅଗ୍ନି ଅତିରିକ୍ତ ଅଗ୍ନିମୟ ପଦାର୍ଥକୁ ବାହାରକୁ ନିକ୍ଷେପ କରିବା ନିମନ୍ତେ ଚେଷ୍ଟା କରିବାରୁ ଅଗ୍ନ୍ୟୁତ୍ପାତ ସଂଘଟିତ ହୁଏ । ଭୂମିକମ୍ପ ମଧ୍ୟ ଏହି ହେତୁରୁ ଘଟିଥାଏ ।

ପ୍ରଶ୍ନ

୧। ବର୍ଷାନ୍ତର, ସ୍ୱଚ୍ଛୋଦନଙ୍କର, ମାରାତ୍ମକ, ମହାର୍ଘ ବହୁଦର୍ଶିତା, ଧୂମୋ-ଦ୍ଗାର-ସୂଚୀ, ଏହି ପଦମାନଙ୍କର ସମାସ ଓ ଅର୍ଥ ବୋଲ।

୨। 'ଆଣ୍ଡ୍ରିଜ୍‌ପର୍ବତ ଉଚ୍ଚତାବିଷୟରେ ହିମାଳୟର କନିଷ୍ଠ, ମାତ୍ର ଦୈର୍ଘ୍ୟରେ ଜ୍ୟେଷ୍ଠ,' ଏହି ବାକ୍ୟର ବିସ୍ତାରିତ ବ୍ୟାଖ୍ୟା କର।

୩। ଜାବାଦ୍ୱୀପ କେଉଁଠାରେ? ସେଠାରେ କି କି ହିନ୍ଦୁକୀର୍ତ୍ତି ଅଛି?

୪। ହିରକୁଲେନିୟମ୍ ଓ ପମ୍ପିଆଇ କେଉଁଠାରେ?

# ଜଳରାଶି

ଏହି ପୃଥିବୀର ଜଳରାଶିର ତୁଳନାରେ ସ୍ଥଳପ୍ରଦେଶ କି କ୍ଷୁଦ୍ର, କି ସାମାନ୍ୟ! ପୃଥିବୀପୃଷ୍ଠର ପ୍ରାୟ ଚାରିଭାଗର ତିନିଭାଗ ସଲିଳ-ସମାଚ୍ଛନ୍ନ। ଅମ୍ବୁରାଶିର ଏହି ଚତୁର୍ଦ୍ଦିଗବ୍ୟାପିତା, କୁମେରୁଠାରୁ ସୁମେରୁ ପର୍ଯ୍ୟନ୍ତ ଏହି ସୁବିଶାଳ ବିସ୍ତାର ଏବଂ ମହାସୁଲଭତା ବିଶ୍ୱବିଧାତାଙ୍କର ମଙ୍ଗଳମୟ ବିଧାନର କି ସୁମହତ୍ ଓ ସୁନ୍ଦର ନିଦର୍ଶନ! ଜୀବରାଜ୍ୟ ଏବଂ ଉଦ୍ଭିଦ୍‌ରାଜ୍ୟର ଉତ୍ପତ୍ତି ଏବଂ ସ୍ଥିତି ନିମିତ୍ତ ଜଳ ଏକାନ୍ତ ଆବଶ୍ୟକ। ମନୁଷ୍ୟର ଶିଳ୍ପ ବାଣିଜ୍ୟ ପ୍ରଭୃତି କ୍ରିୟାକଳାପରେ ଜଳର ଏକାନ୍ତ ପ୍ରୟୋଜନ। ନଦୀ ହ୍ରଦ ସମୁଦ୍ର-ରୂପରେ ଏହା ପ୍ରକୃଷ୍ଟପଥରୂପେ ପରିଣତ ହୋଇ ମାନବଜାତିର କି ଅଶେଷ କଲ୍ୟାଣ ସାଧନ କରୁଅଛି! ଯେଉଁ ଅପଧନ ସୂର୍ଯ୍ୟର ଐନ୍ଦ୍ରଜାଲିକ ପ୍ରଭାବରେ ଗଗନଦେଶକୁ ଉତ୍ତୋଳିତ ହୋଇ ଏବଂ ବାୟୁଦ୍ୱାରା ନାନାପ୍ରଦେଶକୁ ସଞ୍ଚାଳିତ ହୋଇ ନିଦାଘସନ୍ତପ୍ତ ଧରଣୀବକ୍ଷକୁ ବୃଷ୍ଟିଧାରଦ୍ୱାରା ସୁଶୀତଳ ଏବଂ ସୁଶ୍ୟାମଳ କରେ, ଯେଉଁ ଶିଶିରବିନ୍ଦୁଚୟ ମୁକ୍ତା-ବଳୀ ରମଣୀୟ ରୂପ ଧାରଣ କରି ପ୍ରଭାତକାଳୀନ ଉଦ୍ଭିଲ୍ଲକ୍ଷ୍ମୀର କଳେବରକୁ ବିମଣ୍ଡିତ କରେ, ଯେଉଁ କୁହେଳି ଶୀତକାଳର ଶର୍ବରୀ ଓ ପ୍ରଭାତମାନଙ୍କରେ ଅଦ୍ଭୁତରୂପେ ଅବନୀମୁଖକୁ ଅବଗୁଣ୍ଠିତ କରେ, ଯେଉଁ ତୁଷାରରାଶି ହିମାଳୟାଦି

ଅତ୍ୟୁନ୍ନତ ଗିରିଶିଖରମାନଙ୍କର ଶାଶ୍ୱତ ଶୁଭ୍ର ଆଚ୍ଛାଦନରୂପେ ଅନୁପମ ମହିମାରେ ନିତ୍ୟ ବିରାଜିତ, ଯେଉଁ କରକାରାଶି ଶିଳାଖଣ୍ଡରୂପେ ମେଘପ୍ରଦେଶରୁ ବର୍ଷିତ ହୋଇ ଆମ୍ଭମାନଙ୍କର କୌତୁହଳ ଉଦ୍ଦୀପ୍ତ କରେ; ସେସମସ୍ତ ଜଳର ରୂପାନ୍ତର ମାତ୍ର । ତୃଣଦଳର ହରିତାଭମାନ ମାଧୁରୀ, ତରୁଲତାମାନଙ୍କର ନୟନାଭିରାମ ଓ ବିପୁଳହିତକର ପତ୍ର-ପୁଷ୍ପ-ଫଳ-ସମ୍ପଦ, ଶସ୍ୟକ୍ଷେତ୍ରର ପୀତାଭମାନ



ଜଳରାଶି

ପ୍ରାଣପରିପୋଷକ ପକ୍ୱଶସ୍ୟସମ୍ଭାରର ଉଲ୍ଲାସକର ସମୃଦ୍ଧି, ଏସମସ୍ତ ଜଳର ମହିମା କୀର୍ତ୍ତନ କରୁଅଛନ୍ତି । ଜଳ ମନୁଷ୍ୟୋଦ୍ଭାବିତ ଯନ୍ତ୍ରସଙ୍ଗରେ ସଂଯୋଜିତ ହୋଇ ସହସ୍ର ସହସ୍ର ଲୋକାପେକ୍ଷା ଅଧିକତର କାର୍ଯ୍ୟ ସମାଧାନ କରୁଅଛି । ସୂତ୍ରକର୍ତ୍ତନ, ବସ୍ତ୍ରବୟନ, ଶସ୍ୟପେଷଣ, ସ୍ଥଳଯାନ ଓ ଜଳଯାନର ପରିଚାଳନାଦି ସହସ୍ର ସହସ୍ର ବିପୁଳ ବ୍ୟାପାର ଜଳର ସାହାଯ୍ୟରେ ସମ୍ପାଦିତ ହେଉଅଛି ।

ଯେଉଁ ଅସୀମ ନୀଳାମ୍ବୁରାଶି ଅବନୀମଣ୍ଡଳକୁ ପରିବେଷ୍ଟନ କରି

ମହାସାଗର ନାମରେ ଅଭିହିତ ହେଉଅଛି, ତାହାର ଅନୁପମ ମହୋଦାର୍ଯ୍ୟ ସୌନ୍ଦର୍ଯ୍ୟମହିମା ଅନୁଧ୍ୟାନ କଲେ କାହାର ହୃଦୟ ବିସ୍ମୟାନନ୍ଦରସରେ ପ୍ଳାବିତ ନ ହେବ ? କାହାର ପ୍ରାଣ ଅପାର୍ଥିବ ମହାଭାବରେ ବିସ୍ଫାରିତ ନ ହେବ ? କେତେବେଳେ ତାହାର ପ୍ରଭଞ୍ଜନାକୁଳିତ କରାଳ ତରଙ୍ଗୋଚ୍ଛ୍ୱାସର ରୁଦ୍ରମହିମାର ଦର୍ଶନରେ ମନ ଭୟବିହ୍ୱଳ ଏବଂ ସ୍ତମ୍ଭିତ ହୋଇଯାଏ, କେତେବେଳେ ଅବା ତାହାର ନେତ୍ରବିନୋଦନ ସୁନୀଳ ପ୍ରଶାନ୍ତ ସୁବିସ୍ତୀର୍ଣ୍ଣ ବକ୍ଷରେ ସୂର୍ଯ୍ୟ-ଚନ୍ଦ୍ର-ତାରକାଦି ଜ୍ୟୋତିଷ୍କର ମଧୁମୟ ଆଲୋକ-ବିଳାସର ଅନବଚନୀୟ ସୌନ୍ଦର୍ଯ୍ୟ ଅବଲୋକନ କରି ଚିତ୍ତ ଆନନ୍ଦାଭିଭୂତଶାନ୍ତିରସରେ ନିମଗ୍ନ ହୋଇଯାଏ ।

ସ୍ଥଳପ୍ରଦେଶ ପରି ସମୁଦ୍ରଗର୍ଭ ମଧ୍ୟ ଉତ୍ତୁଙ୍ଗ ପର୍ବତ ଓ ଅତଳସ୍ପର୍ଶ ଅଗାଧ ଉପତ୍ୟକାନିଚୟ ଦ୍ୱାରା ସମାକୀର୍ଣ୍ଣ ଏବଂ ଆଗ୍ନେୟଗିରିମାନଙ୍କର ଭୀଷଣ ବାଡ଼ବାନଳୋତ୍ପାତଦ୍ୱାରା ବିକ୍ଷୋଭିତ । ଏହି ଭୂମଣ୍ଡଳର ମହାପରିଖାରୂପୀ ମହାସାଗର ଯଦି କିୟତ୍କାଳ ନିମିତ୍ତ କୌଣସି ପ୍ରକାରେ ଶୁଷ୍କ ହୋଇଯାନ୍ତା, ତାହାହେଲେ କି ପ୍ରକାଣ୍ଡ ବ୍ୟାପାର, କି ଅଦ୍ଭୁତ ଦୃଶ୍ୟ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଅନ୍ତା ! କେତେ ପର୍ବତ, କେତେ ଉପତ୍ୟକା, କ୍ଷୁଦ୍ରତମ କୀଟାଣୁଠାରୁ ପ୍ରକାଣ୍ଡକଳେବର ତିମି ପର୍ଯ୍ୟନ୍ତ କେତେ କେତେ ଜଳଚର ପ୍ରାଣୀ, ଆଣୁବୀକ୍ଷଣିକ ଉଦ୍ଭିଦଠାରୁ ସହସ୍ରହସ୍ତପରିମିତ ଆଲଜି ନାମକ ସୁବିଶାଳ ମହାଦ୍ରୁମ ପର୍ଯ୍ୟନ୍ତ କେତେ କେତେ ଉଦ୍ଭିଦ ସମୁଦ୍ରମଧ୍ୟରେ ଜୀବିତ ରହିଅଛନ୍ତି । ମଣିମୁକ୍ତାପ୍ରବାଳାଦି ଅସଂଖ୍ୟ ରତ୍ନରାଜି ଏହାର ଗର୍ଭମଧ୍ୟରେ ବିରାଜିତ ରହି ଏହାର ରତ୍ନାକର ନାମ ସାର୍ଥକ କରୁଅଛନ୍ତି । ଏସମସ୍ତ ବିଷୟ ଚିନ୍ତା କଲେ କାହାର କଳ୍ପନା ଚକିତ ଏବଂ ସ୍ତମ୍ଭିତ ନ ହେବ ?

ଓଜନରେ ଅମ୍ଳଜାନ ନାମକ ବାଷ୍ପର ଆଠଭାଗ ଓ ଉଦଜାନ ନାମକ ବାଷ୍ପର ଏକଭାଗ, ଏହି ଉପାଦାନଦ୍ୱୟର ସଂଯୋଗରେ ଜଳ ଉତ୍ପନ୍ନ ହୁଏ ; କିନ୍ତୁ ଏହା ଏକ ଅଦ୍ଭୁତ ବ୍ୟାପାର ଯେ ଉଦଜାନ ଅତ୍ୟନ୍ତ ଦାହ୍ୟପଦାର୍ଥ ଏବଂ ଅମ୍ଳଜାନ ଜ୍ୱଳନକ୍ରିୟାର ଏକାନ୍ତ ପରିପୋଷକ ହେଲେହେଁ, ସେଦୁହିଙ୍କର ସଂଯୋଗୋତ୍ପାଦିତ ଜଳ ଅଗ୍ନିର ନିର୍ବାପକ ଅଟେ ।

ବିଶୁଦ୍ଧ ଜଳ ସମ୍ପୂର୍ଣ୍ଣରୂପେ ବର୍ଣ୍ଣ-ଗନ୍ଧ-ସ୍ୱାଦ-ବିହୀନ, କିନ୍ତୁ ସେପରି ଜଳ ଏକାନ୍ତ ଦୁର୍ଲ୍ଲଭ । ପୃଥିବୀସ୍ଥ ଜଳ ଅନ୍ତରୀକ୍ଷ ଏବଂ ଭୂଦେହରୁ ନାନା ଉପାଦାନ ଗ୍ରହଣ କରି ବର୍ଣ୍ଣ-ଗନ୍ଧ-ସ୍ୱାଦ-ଯୁକ୍ତ ହୁଏ ।

ଭୂମଣ୍ଡଳର ସଲିଳରାଶି ମଧୁର ବା ଲବଣାକ୍ତ । ନଦୀ ଏବଂ ଅଧିକାଂଶ ହ୍ରଦ ଓ ପ୍ରସ୍ରବଣର ଜଳ ଲବଣବିରହିତ ହେବାରୁ ପାନୀୟରୂପେ ବ୍ୟବହାରୋପଯୋଗୀ ଅଟେ । ମଧୁର ଜଳ ଅପେକ୍ଷା ଲବଣ ଜଳର ପରିମାଣ ଅତ୍ୟଧିକ ଅଟେ । ମହାସାଗର ଛଡ଼ା କତିପୟ ହ୍ରଦ ଓ ପ୍ରସ୍ରବଣରେ ମଧ୍ୟ ଲବଣ ଦ୍ରବୀଭୂତ ରହିଅଛି । ଶତଭାଗ ସମୁଦ୍ରଜଳରେ ସାଢ଼େତିନିଭାଗ ଲବଣ ଥିବାର ଦେଖାଯାଏ । ଏହି ହେତୁରୁ ବିଶୁଦ୍ଧ ଜଳ ଅପେକ୍ଷା ସମୁଦ୍ରଜଳ ଭାରୀ ଏବଂ ନୌଚାଳନ ନିମିତ୍ତ ଅଧିକତର ଉପଯୋଗୀ । ସମୁଦ୍ରଜଳର ଲବଣାକ୍ତତା ସର୍ବତ୍ର ସମାନ ନୁହେ । ବୃହତ୍ ନଦୀମାନଙ୍କର ସଙ୍ଗମସ୍ଥଳରେ, ବହୁଳବୃଷ୍ଟି ନିରକ୍ଷବୃତ୍ତ ନିକଟସ୍ଥ ପ୍ରଦେଶରେ, ଗଳିତତୁଷାରାକୁଳିତ ମେରୁସନ୍ନିହିତ ଅଞ୍ଚଳରେ ସମୁଦ୍ରଜଳର ଲବଣତା ଅପେକ୍ଷାକୃତ ଅଳ୍ପ ।

ସମୁଦ୍ରଜଳ ସୂର୍ଯ୍ୟର ଉତ୍ତାପ ଏବଂ ପବନର ଅଭିଘାତ ଯୋଗୁଁ ସର୍ବଦା ଚଞ୍ଚଳ ଏବଂ ପ୍ରବାହାନ୍ୱିତ ଏବଂ ଚନ୍ଦ୍ର ଓ ସୂର୍ଯ୍ୟର ଆକର୍ଷଣ ହେତୁରୁ, ବିଶେଷତଃ ଚନ୍ଦ୍ରର ଆକର୍ଷଣଦ୍ୱାରା ପ୍ରତ୍ୟହ ସ୍ଫୀତ ହୁଏ । ଏହି ସ୍ଫୀତିଦ୍ୱାରା ଜୁଆର ସଂଘଟିତ ହୁଏ ।

## ପ୍ରଶ୍ନ

୧ । ଚତୁର୍ଦ୍ଦିଗ୍‌ବ୍ୟାପିତା, ଐନ୍ଦ୍ରଜାଲିକପ୍ରଭାବ, ରୂପାନ୍ତର, ମୁକ୍ତାନିନ୍ଦୀ, ପ୍ରଭଞ୍ଜନାକୁଳିତ, ସୂର୍ଯ୍ୟଚନ୍ଦ୍ର ତାରକାଦିଜ୍ୟୋତିଷ୍କ, ଏହି ପଦମାନଙ୍କର ସମାସ ଓ ଅର୍ଥ ବିବୃତ କର ।

୨ । ଉଦ୍ବେଳିତ, ଅବଗୁଣ୍ଠିତ, ଉଦ୍ଦୀପ୍ତ, ହରିତାୟମାନ, ବିସ୍ତାରିତ, ବିସ୍ତୀର୍ଣ୍ଣ, ପରିଖା, ଏହି ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ବୋଲ ।

୭ । ସମୁଦ୍ରଗର୍ଭର ଅବସ୍ଥା ସଙ୍ଗେ ପୃଥିବୀର ସ୍ଥଳଭାଗର ଅବସ୍ଥା ତୁଳନା କର ।

## ଜଳପ୍ରପାତ

ନଦୀ ବର୍ତ୍ତୀ ପ୍ରଭୃତି ପ୍ରବାହିତ ଜଳରାଶିର ଯେତେଗୁଡ଼ିଏ ଆକାର ଅଛି, ସେଥିମଧ୍ୟରେ ଜଳପ୍ରପାତ ଅନ୍ୟତମ ଅଟେ । ପର୍ବତ କିମ୍ବା ଉଚ୍ଚଭୂମିରେ ଯେଉଁ ଜଳରାଶି ସଞ୍ଚିତ ହୋଇଥାଏ ତାହା ଏକ କିମ୍ବା ବହୁ ଧାରରେ ନିମ୍ନ-ଦେଶକୁ ପ୍ରବାହିତ ହୁଏ । ଏହି ପ୍ରବାହସବୁ କୌଣସି ଉନ୍ନତ ପାଷାଣତଟରେ



ଜଳପ୍ରପାତ

ଉପନୀତ ହେଲେ ତାହା ଲମ୍ଫପ୍ରଦାନପୂର୍ବକ ନିମ୍ନଦେଶକୁ ଅବତରଣ କରେ । ଜଳ ପ୍ରବାହର ଏହି ନୈସର୍ଗିକ ଅବତରଣକୁ ଲୋକେ ଜଳପ୍ରପାତ କହନ୍ତି ।

ଉତ୍ତର ଆମେରିକାର ଭୁବନପ୍ରସିଦ୍ଧ ନାଏଗ୍ରା ନାମକ ମହା ଜଳପ୍ରପାତ ଅଣ୍ଟେରିଓ ଏବଂ ଇରାଇ ନାମକ ହ୍ରଦଦ୍ୱୟର ମଧ୍ୟବର୍ତ୍ତୀ । ନାଏଗ୍ରା ଅଣ୍ଟେରିଓ ହ୍ରଦରୁ ପ୍ରବାହିତ ହୋଇ ଇରାଇହ୍ରଦରେ ପତିତ ହୋଇଅଛି । ସେହି ନଦୀ ଉତ୍ପତ୍ତି-ସ୍ଥାନରୁ କେତେକ ଦୂର ଯାଇ ଦୁଇଗୋଟି ଶାଖାରେ ବିଭକ୍ତ ହୋଇ-ଅଛି ; ସେହି ଦୁଇଗୋଟି ଶାଖା ଗୋଟିଏ ଗଭୀର ପର୍ବତଗହ୍ୱରରେ ପତିତ ହେଉଅଛି, ଏକ ଶାଖାର ପତନର ଉଚ୍ଚତା ୧୬୪ ଫିଟ୍ ଏବଂ ଅନ୍ୟଟିର ୧୫୦ ଫିଟ ଅଟେ ; ପ୍ରତିମିନଟରେ ଏହି ଜଳପ୍ରପାତରୁ ୧,୮୦,୦୦୦୦୦ (ଏକ କୋଟି ଅଶୀ ଲକ୍ଷ) ଘନଫୁଟ ଜଳ ପ୍ରପାତିତ ହେଉଅଛି । ନାଏଗ୍ରା ଜଳପ୍ରପାତରେ ଏହି ବିପୁଳ ଅମ୍ବୁରାଶିର ଅହରହ ପତନର ବଜ୍ରନାଦଜଣା କୋଲାହଳ ତାହାର ସୁଦୂରବ୍ୟାପୀ ଘୋର ଭୈରବ ଦୃଶ୍ୟ ଯେ କେଡ଼େ ଅଦ୍ଭୁତ, କେଡ଼େ ବୈଚିତ୍ର୍ୟ-ମୟ, ତାହା ବାକ୍ୟଦ୍ୱାରା ବର୍ଣ୍ଣିତ ହୋଇ ନ ପାରେ । ସେହି ଉତ୍ତାଳ କଲ୍ଲୋଳମୟ ଅପାର ଜଳରାଶିର ଘାତପ୍ରତିଘାତଜନିତ ଭୂକମ୍ପ, ସେଥିରୁ ସ୍ତମ୍ଭାକାରରେ ଉତ୍ଥିତ ମହାଶୁଭ୍ରାଲୋକଶିଖାସଦୃଶ ଅନ୍ତରୀକ୍ଷଭେଦୀ ଶୀକରରାଶି ସୂର୍ଯ୍ୟକିରଣ ସଂପାତଦ୍ୱାରା ରଚିତ ସହସ୍ର ସହସ୍ର ନାନା ଜ୍ୟୋତିର୍ମୟ ବର୍ଣ୍ଣଭାସ୍ୱର ଇନ୍ଦ୍ରଧନୁମାନଙ୍କର ନୟନଧର୍ଷଣ-ପ୍ରଭା ଦର୍ଶକର ବୁଦ୍ଧି ଓ ହୃଦୟକୁ ଏକାବେଳକେ ସ୍ତମ୍ଭିତ କରିଦିଏ ।

ଆମ୍ଭମାନଙ୍କର ଏହି ଉତ୍କଳ ପ୍ରଦେଶରେ ମଧ୍ୟ କ୍ଷୁଦ୍ର ବୃହତ୍ ଅନେକ-ଗୁଡ଼ିଏ ଜଳପ୍ରପାତ ଅଛି । ସେଥିମଧ୍ୟରୁ ବାମଣ୍ଡା ରାଜ୍ୟର ରାଜଧାନୀ ଦେବଗଡ଼ ନଗରର ସନ୍ନିହିତ ପଞ୍ଚଖଣ୍ଡାଗିରିର ସୀମାନ୍ତରୂପିଣୀ ପ୍ରଧାନପାଟ ନାମ୍ନୀ ନିର୍ଝରିଣୀ ସର୍ବାଗ୍ରଗଣ୍ୟ ଅଟେ । ଉକ୍ତ ପ୍ରପାତ ପ୍ରାୟ ୭୦ ହସ୍ତ ଊର୍ଦ୍ଧ୍ୱରୁ ଘୋରଗମ୍ଭୀର-ଗହ୍ୱଦ-ମନ୍ଦ୍ର-ନାଦ ସହକାରେ ଅବତରଣପୂର୍ବକ ନିମ୍ନସ୍ଥ ବୃହତ୍ ଶିଳାଖଣ୍ଡମାନଙ୍କୁ ଆଘାତ କରି ନିତ୍ୟ ପ୍ରବାହିତ ହେଉଅଛି । ଗିରିଶିଖରରୁ ଖସିପଡ଼ୁଥିବା ପ୍ରବାହ ଉପରେ ସୌରରଶ୍ମି ପ୍ରତିଫଳିତ ହେଲାବେଳେ ଶତ ଶତ ପରମସୁନ୍ଦର ଇନ୍ଦ୍ରଧନୁ ଦିବ୍ୟଶୋଭାରେ ଉଦ୍ଭାସିତ ହେବାର ଦେଖାଯାଏ । ଏହି ନିର୍ଝରିଣୀର ଚତୁଃପାର୍ଶ୍ୱର ଏବଂ ପ୍ରୋକ୍ତ ଗିରିଶିଖରର ଛବି ଏକାନ୍ତ ରମଣୀୟ । ସ୍ୱାସ୍ଥ୍ୟପ୍ରଦ

ସୁରଭିକୁସୁମମଣ୍ଡିତ ନାନାଦ୍ରୁମଲତାପୂର୍ଣ୍ଣ ନିକୁଞ୍ଜର ଶୋଭା, ବିବିଧ ବିହଙ୍ଗକାକଳିର ମାଧୁରୀ ଏବଂ ସମଗ୍ର ସ୍ଥଳୀର ଶାନ୍ତରସାସ୍ପଦ ମଧୁର ଗମ୍ଭୀର ପ୍ରଭାବ ଉପଲବ୍ଧ କଲେ ହୃଦୟ ଅପାର ଶାନ୍ତରସରେ ନିମଗ୍ନ ହୁଏ । ବାମଣ୍ଡାର ପୂର୍ବତନ ସ୍ୱନାମଧନ୍ୟ ରାଜା ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଏହି ରମଣୀୟ ପ୍ରଦେଶରେ 'ବସନ୍ତ-ନିବାସ' ନାମକ ନିକେତନ ନିର୍ମାଣ କରି ତାହାଙ୍କର ଦିବ୍ୟ ଶୋଭାନୁଭାବକତାର ପରିଚୟ ଦେଇଅଛନ୍ତି ।

ପ୍ରାକୃତିକ ଜଗତରେ ଜଳପ୍ରପାତ ଦୁଇଗୋଟି କାର୍ଯ୍ୟ କରେ ; ତାହା ନିଜର ପ୍ରବାହଦ୍ୱାରା ଉପରିସ୍ଥିତ ମୃତ୍ତିକା, ପ୍ରସ୍ତର, ଧାତବଦ୍ରବ୍ୟ ଏବଂ ଅନ୍ୟାନ୍ୟ ଅନେକପ୍ରକାର ବସ୍ତୁ ନିମ୍ନପ୍ରଦେଶକୁ ବହନ କରିଥାଏ, ଏବଂ ଅନବରତ ପତନଦ୍ୱାରା ପର୍ବତଗାତ୍ରରେ ଗଭୀର ଗହ୍ୱରମାନ ଖୋଦିତ କରେ । ଏହିପ୍ରକାରେ ଭୂପୃଷ୍ଠର କ୍ଷୟ ଓ ଉପଚୟ ଉଭୟ କାର୍ଯ୍ୟ ସାଧିତ ହୁଏ ।

### ପ୍ରଶ୍ନ

୧ । ଜଳପ୍ରପାତର ଉତ୍ପତ୍ତି କିପରି ଘଟେ ?

୨ । ନାଏଗ୍ରା ଜଳପ୍ରପାତର ଅବସ୍ଥିତି ଓ ପ୍ରପତନ ବର୍ଣ୍ଣନ କର ।

୩ । ଶୋଭାନୁଭାବକତା, ଜଳରାଶିର ଘାତପ୍ରତିଘାତଜନିତ ଭୂକମ୍ପ, ନିମ୍ନ-ଘର୍ଷଣପ୍ରଭା, ଶାନ୍ତରସାସ୍ପଦ ପ୍ରଭାବ, ଏହି ବାକ୍ୟାଂଶଗୁଡ଼ିକର ବ୍ୟାଖ୍ୟା କର ।

୪ । 'ପ୍ରଧାନ ପାଠ' ଜଳପ୍ରପାତର ଅବସ୍ଥିତି ବର୍ଣ୍ଣନ କର ।

୫ । ଜଳପ୍ରପାତର ପ୍ରାକୃତିକ କାର୍ଯ୍ୟ କଣ ?

## ମହାପୁରୁଷ ମହମ୍ମଦ

ମହମ୍ମଦ ଯେଉଁ ଦେଶରେ ଜନ୍ମଗ୍ରହଣ କରିଥିଲେ ତାହା ଆରବ ନାମରେ ପ୍ରସିଦ୍ଧ । ହିବ୍ରୁ ଭାଷାରେ ଆରବ ଶବ୍ଦର ଅର୍ଥ ମରୁ-ପ୍ରାନ୍ତର । ବସ୍ତୁତଃ

ଆରବ ଅନୁଚ୍ଚଗିରିମାଳାସମାକୀର୍ଣ୍ଣ ପ୍ରକାଣ୍ଡ ଭୟାବହ ମରୁକ୍ଷେତ୍ର ଅଟେ । ବୃକ୍ଷ-ଆଚ୍ଛାଦନ ତରୁଲତାଶୂନ୍ୟ ବାଲୁକାମୟ ଘୋର ମରୁସ୍ଥଳୀ ଭୀଷଣ ମହିମାରେ ବିରାଜିତ । ସର୍ବତ୍ର ପ୍ରକୃତି କରାଳ ମୂର୍ତ୍ତି ଧାରଣ କରି ପଥିକଚିତ୍ତରେ ମହାତ୍ରାସ ଜନ୍ମାଉଅଛି । ଏହି ମହାମରୁମଧ୍ୟରେ ଯେଉଁଠାରେ ପାଷାଣପର୍ବତଗାତ୍ରରୁ କରୁଣାରୂପିଣୀ ନିର୍ଝରଣୀ ପ୍ରବାହିତ ହେଉଅଛି, ସେହି ସ୍ଥାନମାନଙ୍କରେ ସୁଶ୍ୟାମଳତୃଣାଚ୍ଛାଦିତ ଉର୍ବର ଭୂଖଣ୍ଡମାନ ଶ୍ରାନ୍ତପିପାସାର୍ତ୍ତ ପଥିକମାନଙ୍କର ଘୋର କ୍ଳେଶକୁ କଥଞ୍ଚିତ ହରଣ କରେ ।

୫୭୦ ଖ୍ରୀଷ୍ଟାବ୍ଦର ରବିଓଲ୍‌ଅଉଏଲ୍ ନାମକ ମାସର ଦ୍ୱାଦଶ ଦିବସରେ (ଅଗଷ୍ଟ ମାସ ୨୯ ତାରିଖ) ମହାପୁରୁଷ ମହମ୍ମଦ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମର ପ୍ରାୟ ଛଅମାସପୂର୍ବେ ତାଙ୍କ ପିତା ଅବ୍‌ଦୁଲ୍ଲାଙ୍କର ପରଲୋକ-ପ୍ରାପ୍ତି ହୋଇଥିଲା ଏବଂ ପ୍ରାୟ ଛଅବର୍ଷପରେ ତାଙ୍କ ଜନନୀ ଅମିନାଙ୍କର ମୃତ୍ୟୁ ଘଟିଲା । ପିତୃମାତୃହୀନ ମହମ୍ମଦ ଶୈଶବକାଳରେ ପିତାମହ ଅବଦୁଲ୍ ମୋତା-ଲେବଙ୍କ ଯତ୍ନରେ ପ୍ରତିପାଳିତ ହୋଇଥିଲେ । ଏ ଘଟଣାର ଦୁଇବର୍ଷପରେ ପିତାମହ ଆପଣାର ମୃତ୍ୟୁ ଆସନ୍ନ ଜାଣି ନିଜ ଜ୍ୟେଷ୍ଠପୁତ୍ର ଆବୁତାଲେବଙ୍କ ହସ୍ତରେ ମହମ୍ମଦଙ୍କର କ୍ଷୁଦ୍ରହସ୍ତ ଅର୍ପଣ କରି ଅନାଥବାଳକକୁ ପୁତ୍ରନିର୍ବିଶେଷରେ ପାଳନ କରିବାକୁ କହି ମହାନିଦ୍ରାରେ ନୟନ ମୁଦ୍ରିତ କଲେ ଏବଂ ସେହି ସମୟରୁ ମହମ୍ମଦ ଜ୍ୟେଷ୍ଠତାତଙ୍କ ଯତ୍ନରେ ପ୍ରତିପାଳିତ ହେଲେ । ଦ୍ୱାଦଶ ବର୍ଷ ବୟସରେ ଆବୁତାଲେବ ମହମ୍ମଦଙ୍କୁ ସଙ୍ଗରେ ନେଇ ବାଣିଜ୍ୟାର୍ଥ ସିରିୟା ଦେଶକୁ ଯାତ୍ରା କଲେ । ମାର୍ଗରେ ନାନା ନୂତନ ଦୃଶ୍ୟ ଓ ହିବ୍ରୁମାନଙ୍କର ମହାତୀର୍ଥ ପ୍ରସିଦ୍ଧ ସିନାଇପର୍ବତ ଦର୍ଶନ କରି ମହମ୍ମଦ ଆନନ୍ଦ ଓ ନବଜାତ ଭକ୍ତିଭାବରେ ପୁଲକିତ ହେଲେ । ହିବ୍ରୁଧର୍ମଶାସ୍ତ୍ରରେ ଲିଖିତ ଅଛି ଯେ ପ୍ରାଚୀନ-କାଳରେ ପରାତ୍ପର ପରମେଶ୍ୱର ବଜ୍ରନାଦରେ ଚରାଚର ବିକମ୍ପିତ କରି ସିନାଇପର୍ବତର ଶୃଙ୍ଗରେ ଇସ୍ରାଏଲ୍‌ବଂଶୀୟମାନଙ୍କର ନେତା ମୁସାଙ୍କ ନିକଟରେ ଆବିର୍ଭୂତ ହୋଇ ତାହାଙ୍କର ଦଶ ଆଜ୍ଞା ପ୍ରଦାନ କରିଥିଲେ । ଏହି କଥା ମହମ୍ମଦଙ୍କ ପ୍ରାଣରେ ଦୃଢ଼ରୂପେ ଅଙ୍କିତ ହେଲା । ଏଥିଉତ୍ତାରେ ସେ ବସ୍ରାନଗରର

ଜଣେ ଖ୍ରୀଷ୍ଟୀୟ ସନ୍ନ୍ୟାସୀଙ୍କଠାରୁ ଖ୍ରୀଷ୍ଟଧର୍ମର ମୂଳତତ୍ତ୍ୱ ଅବଗତ ହେଲେ ଏବଂ କିଛିକାଳ ସେଠାରେ ରହି ଜ୍ୟେଷ୍ଠତାତଙ୍କ ସଙ୍ଗେ ମକ୍କାକୁ ଫେରିଆସି ପୈତୃକ ବାଣିଜ୍ୟ ବ୍ୟବସାୟରେ ନିଯୁକ୍ତ ହେଲେ ।

ଏହି ସମୟରେ ଖାଦେଜା ନାମ୍ନୀ ବିପୁଳସମ୍ପତ୍ତିଶାଳିନୀ ଜଣେ ରମଣୀ ମକ୍କାନଗରରେ ଥିଲେ । ସେ ଯେପରି ପରମରୂପବତୀ, ସେହିପରି ପରମ-ଗୁଣବତୀ ଓ ଶୁଦ୍ଧଚରିତ୍ରା ଥିଲେ । ଅତ୍ୟଳ୍ପ ବୟସରେ ବିଧବା ହୋଇ ଅତି ପବିତ୍ରଭାବରେ ଜୀବନ ଯାପନ କରୁଥିଲେ । ଆରବର ପ୍ରଧାନ ପ୍ରଧାନ ସାମନ୍ତମାନେ ତାଙ୍କର ପାଣିଗ୍ରହଣାର୍ଥୀ ହୋଇଥିଲେ, କିନ୍ତୁ ଖାଦେଜାଦେବୀ କାହାରିକୁ ବିବାହ କରି ନ ଥିଲେ । ମହମ୍ମଦ ପ୍ରଥମେ ଖାଦେଜାଙ୍କର କର୍ମଚାରୀ ପଦରେ ନିଯୁକ୍ତ ହୋଇ ବାଣିଜ୍ୟ ବ୍ୟବସାୟରେ ନିଯୁକ୍ତ ଥିଲେ । ପରେ ତାଙ୍କର ଧର୍ମଭାବ ଓ ସାଧୁତା ଦ୍ୱାରା ମୋହିତ ହୋଇ ଖାଦେଜାଦେବୀ ତାହାଙ୍କୁ ଆତ୍ମସମର୍ପଣ କଲେ ଏବଂ ନିଜର ବିପୁଳ ଧନରାଶି ପତିପଦରେ ଉତ୍ସର୍ଗ କରି ସ୍ୱାମୀଙ୍କ ସେବାରେ ଆପଣାକୁ ନିୟୋଜିତ କଲେ ।

ଏଥିଉତ୍ତାରେ ମହମ୍ମଦଙ୍କର ଧର୍ମଭାବ ବର୍ଦ୍ଧିତ ହେବାକୁ ଲାଗିଲା । ସେ ମକ୍କାନଗରର ଅନତିଦୂରସ୍ଥ ନିର୍ଜନ ପର୍ବତଗୁହାରେ ଈଶ୍ୱରଧ୍ୟାନରେ ନିମଗ୍ନ ହୋଇ ତପୋବଳ ସଞ୍ଚୟ କରିବାକୁ ଲାଗିଲେ । ଏହିପରି କେତେକ ବର୍ଷ ମହା ତପସ୍ୟାରେ ଅତିବାହିତ କଲେ । ଏହି ଅବସ୍ଥାରେ ସେ ପରମେଶ୍ୱରଙ୍କୁ ଲାଭ କରିବାପାଇଁ ଅତ୍ୟନ୍ତ ବ୍ୟାକୁଳ ହୋଇ ଅନାହାରରେ, ଅନିଦ୍ରାରେ କେତେକାଳ କଟାଇଥିଲେ ; ହୃଦୟରେ ବିଷମ ଯନ୍ତ୍ରଣା ଅନୁଭବ କରି କେତେବେଳେ ନୈରାଶ୍ୟରେ, କେତେବେଳେ ଅବା ଘୋର ବିଷାଦରେ ଉନ୍ମତ୍ତପ୍ରାୟ ହୋଇଥିଲେ ; ତାହା ଭାଷାଦ୍ୱାରା ବର୍ଣ୍ଣିତ ହୋଇ ନ ପାରେ । ଅବଶେଷରେ ତାହାଙ୍କର ହୃଦୟର ଅନ୍ଧକାର ବିଦୂରିତ ହେଲା, ତାଙ୍କ ଆଗରେ ପରମେଶ୍ୱର ପ୍ରକାଶିତ ହେଲେ ଏବଂ ତାହାଙ୍କର ସମସ୍ତ ସନ୍ଦେହ ଅନ୍ତର୍ହିତ ହେଲା । ତାହାଙ୍କର ହୃଦୟାକାଶରେ ମହା ଗମ୍ଭୀର ଅଶରୀରବାଣୀ ନିନାଦିତ

ହେଲା । "ଯାଅ, ମହମ୍ମଦ, ଜଗତରେ ଇସ୍‌ଲାମ୍ * ପ୍ରଚାର କର," ଏହି ମହାବାଣୀ ଶୁଣି, ମହମ୍ମଦ ୪୦ ବର୍ଷ ବୟସରେ ନବଜୀବନ ଲାଭ କରି ଜଗତର ନରନାରୀମାନଙ୍କୁ ଏକମାତ୍ର ପ୍ରଭୁ ପରମେଶ୍ୱରଙ୍କ ମହିମା ଘୋଷଣା କରିବା ନିମିତ୍ତ ବଦ୍ଧ-ପରିକର ହେଲେ ।

ସେ ସମୟରେ ଆରବମାନଙ୍କର ସାମାଜିକ ଓ ନୈତିକ ଅବନତି ଅତି ଭୟଙ୍କର ହୋଇଥିଲା । ସେମାନେ ସର୍ବଦା ଗୃହବିବାଦରେ ରତ ଥିଲେ । ଚୋରିଆଡ଼େ ଅଶାନ୍ତି, ପ୍ରତାରଣା, ଦସ୍ୟୁ-ବୃତ୍ତି, ସୁରାପାନ, ବ୍ୟଭିଚାର, ନର-ହତ୍ୟା ପ୍ରଭୃତି ପାପରେ ଆରବଦେଶ ସର୍ବଦା କଳଙ୍କିତ ହେଉଥିଲା । ଏପରି ସମୟରେ ସେହି ଭୟଙ୍କର ଦେଶରେ ସେହି ଦୁର୍ବୃତ୍ତ ଆରବମାନଙ୍କ ମଧ୍ୟରେ ମହାପୁରୁଷ ମହମ୍ମଦ "ଈଶ୍ୱର ଏକ ଏବଂ ଅଦ୍ୱିତୀୟ, କେବଳ ତାହାଙ୍କର ପୂଜା କର," ଏହି ମହାଘୋଷଣା ବଜ୍ରଗମ୍ଭୀରନାଦରେ ପ୍ରଚାରି କଲେ । ସର୍ବାଦୌ ତାଙ୍କ ସହଧର୍ମିଣୀ ଖାଦେଜାଦେବୀ ଇସ୍‌ଲାମଧର୍ମ ଗ୍ରହଣ କରିଥିଲେ । କ୍ରମେ କ୍ରମେ ଅଳ୍ପକାଳ ମଧ୍ୟରେ ଅନେକଗୁଡ଼ିଏ ନରନାରୀ ଇସ୍‌ଲାମ୍‌ଧର୍ମରେ ଦୀକ୍ଷିତ ହେଲେ । ଏହା ଦେଖି ଅବିଶ୍ୱାସୀ ଐହିକ-ସୁଖଭୋଗାସକ୍ତ ଅଧର୍ମାଚାରୀ ପାଷଣ୍ଡମାନେ କ୍ରୋଧୋନ୍ମତ୍ତ ହୋଇ ମହମ୍ମଦ ଓ ତାଙ୍କ ଶିଷ୍ୟମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରିବାକୁ ଲାଗିଲେ ଏବଂ ଏହି ସମୟରେ ତାଙ୍କର ପରମସାଧ୍ୱୀ ସହଧର୍ମିଣୀ ଖାଦେଜାଦେବୀ ଓ ଜ୍ୟେଷ୍ଠତାତ ଆବୁତାଲେବ ପର-ଲୋକ ଗମନ କରନ୍ତେ ତାଙ୍କୁ ମହାଶୋକରେ ପଡ଼ିବାକୁ ହୋଇଥିଲା । ଏହି ଦାରୁଣ ଅତ୍ୟାଚାର ଓ ମହାଶୋକ ମଧ୍ୟରେ ସେ ଜଣେ ଶିଷ୍ୟକୁ ଧର୍ମପ୍ରଚାର ନିମିତ୍ତ ମଦିନା ନଗରୀକୁ ପ୍ରେରଣ କଲେ ଏବଂ ସୌଭାଗ୍ୟକ୍ରମେ ସେ ସ୍ଥାନରେ ସମୁଦାୟ ପ୍ରଧାନ ଲୋକ ତାଙ୍କ ଧର୍ମ ଗ୍ରହଣ କରି ତାଙ୍କୁ ସେଠାକୁ ଆଣିବାପାଇଁ ୭୦ ଜଣ ଶିଷ୍ୟଙ୍କୁ ମକ୍କାନଗରକୁ ପଠାଇଲେ । ମହମ୍ମଦ ୬୨୨ ଖ୍ରୀଷ୍ଟାବ୍ଦର ଜୁଲାଇ ମାସରେ ମଦିନା ଯାତ୍ରା କଲେ । ତାହାଙ୍କର ମଦିନାପ୍ରସ୍ଥାନକୁ 'ହେଜରତ' ବୋଲାଯାଏ ଏବଂ ସେହି ହେଜରତ ଦିନରୁ ମୁସଲମାନ୍‌ମାନଙ୍କର ହିଜରୀ ସନର

* ଏକ ଈଶ୍ୱରଙ୍କଠାରେ ଆତ୍ମସମର୍ପଣରୂପ ଧର୍ମ ।

ଆରମ୍ଭ ଧରାଯାଏ । ମଦିନାରେ ଆବାଳବୃଦ୍ଧବନିତା ସମସ୍ତେ ତାହାଙ୍କୁ ପରମ ସମାଦରରେ ଗ୍ରହଣ କଲେ ।

ଏଥିଉତ୍ତାରେ ଶତ୍ରୁମାନେ ଚକ୍ରାନ୍ତ କରି ତାଙ୍କ ବିରୁଦ୍ଧରେ ବାରମ୍ବାର ଯୁଦ୍ଧଘୋଷଣା କଲେ । ପ୍ରବଳ ପ୍ରଭାବଶାଳୀ କୋରେଶ୍‌ବଂଶୀୟମାନଙ୍କ ଏବଂ ହିବ୍ରୁଧର୍ମାବଲମ୍ବୀ ଇହୁଦୀମାନଙ୍କ ସଙ୍ଗରେ ଅନେକଗୁଡ଼ିଏ ଯୁଦ୍ଧ ହେଲା । କେତେକ ଯୁଦ୍ଧରେ ଇସ୍‌ଲାମ୍‌ଧର୍ମାବଲମ୍ବୀ ଅର୍ଥାତ୍ ମୁସଲମାନ୍‌ମାନେ ପରାସ୍ତ ହୋଇଥିଲେ, କିନ୍ତୁ ଅଧିକାଂଶ ଯୁଦ୍ଧରେ ଏବଂ ଶେଷ ଯୁଦ୍ଧରେ ଶତ୍ରୁମାନେ ସମ୍ପୂର୍ଣ୍ଣରୂପେ ପରାଜିତ ହୋଇ ପଳାୟନ କଲେ ।

ମୁସଲମାନ୍‌ଧର୍ମ ଦିନକୁଦିନ ଜୟଯୁକ୍ତ ହେବାକୁ ଲାଗିଲା । ୬୩୦ ଖ୍ରୀଷ୍ଟାବ୍ଦରେ ମହମ୍ମଦ ନିଜ ଜନ୍ମଭୂମି ମକ୍କାର ଅଜ୍ଞାନାଚ୍ଛନ୍ନ କୋରେଶ୍‌ମାନଙ୍କୁ ଇସ୍‌ଲାମ୍‌ଧର୍ମରେ ଦୀକ୍ଷିତ କରିବା ନିମିତ୍ତ ଦଶସହସ୍ର ସୈନ୍ୟସହିତ ମକ୍କା ଅଭିମୁଖରେ ଯାତ୍ରା କଲେ ଏବଂ ସେହି ନଗର ନିକଟରେ ଶିବିର ସନ୍ନିବେଶ କଲେ । ଦୟାଗୁଣରେ ମକ୍କାବାସୀମାନଙ୍କୁ ବଶୀଭୂତ କରିବା ମାନସରେ ସେ ସୈନ୍ୟମାନଙ୍କୁ କହିଲେ "ମକ୍କାବାସୀମାନେ ଆକ୍ରମଣ ନ କଲେ କେହି ଯୁଦ୍ଧ କରିବେ ନାହିଁ ଏବଂ ସେମାନେ ଆକ୍ରମଣ କଲେ ତାହା ଧୈର୍ଯ୍ୟସହିତ ସହିବାକୁ ହେବ ।" ମହମ୍ମଦ ଯୋଦ୍ଧୃବେଶ ତ୍ୟାଗ କରି ଫକୀରର ବେଶ ଧାରଣ କଲେ । ସହସା କୋରେଶ୍‌ମାନଙ୍କର ଶରାଘାତରେ ମୁସଲମାନ୍ ସୈନ୍ୟ କ୍ଷତବିକ୍ଷତ ହେବାକୁ ଲାଗିଲା । ମୁସଲମାନ୍‌ମାନେ ଯେ ଆକ୍ରମଣ କଲାକ୍ଷଣି ସହି କୋରେଶ୍‌ମାନଙ୍କୁ ଭୟଙ୍କର ବେଗରେ ଆକ୍ରମଣ କଲାକ୍ଷଣି ମହମ୍ମଦ ଯୁଦ୍ଧରୁ ନିବୃତ୍ତ ହେବା ନିମିତ୍ତ ଆଦେଶ ଦେଇ ନିଜେ ଉଷ୍ଟ୍ରପୃଷ୍ଠରେ ଚଢ଼ି ମକ୍କାର ଦ୍ୱାରଦେଶରେ ଉପସ୍ଥିତ ହେଲେ ଏବଂ ଜଳଦଗମ୍ଭୀର ସ୍ୱରରେ ତାଙ୍କ ପ୍ରଚାରିତ ମହାଧର୍ମଶାସ୍ତ୍ର କୋରାନ୍ ଆବୃତ୍ତି କରିବାକୁ ଲାଗିଲେ । ସେ କେଉଁଆଡ଼କୁ ଭ୍ରୂକ୍ଷେପମାତ୍ର ନ କରି "ସ୍ୱର୍ଗ ଓ ମର୍ତ୍ତ୍ୟ ଏକ ଈଶ୍ୱରଙ୍କ ରାଜ୍ୟ, ଈଶ୍ୱର ସର୍ବଶକ୍ତିମାନ୍" ଏହି ମହାବାକ୍ୟ ବୋଲୁଁ ବୋଲୁଁ କାବା ମନ୍ଦିର ସମ୍ମୁଖରେ ଉପସ୍ଥିତ ହୋଇ ତାହାକୁ ସପ୍ତବାର ପ୍ରଦକ୍ଷିଣ କଲେ ଏବଂ ସମସ୍ତଙ୍କୁ

ଏକ ଈଶ୍ୱରଙ୍କ ଉପାସନା ନିମିତ୍ତ ଆହ୍ୱାନ କରିବାକୁ ଲାଗିଲେ । ତାହାଙ୍କର ଏହି ଅପାର୍ଥିବ ମହାଭାବ ଦେଖି ଶତ୍ରୁମାନେ ସ୍ତମ୍ଭିତ ହୋଇଗଲେ । ତଦନନ୍ତର କୋରେଶ୍‌ମାନଙ୍କ ସଙ୍ଗରେ ସନ୍ଧି ହେଲା ଏବଂ କ୍ରମେ କ୍ରମେ ସହସ୍ର ସହସ୍ର ପୁରୁଷ ଓ ରମଣୀ ତାଙ୍କ ପ୍ରଚାରିତ ନବଧର୍ମ ଗ୍ରହଣ କରିବାକୁ ଲାଗିଲେ ।

୬୩୨ ଖ୍ରୀଷ୍ଟାବ୍ଦରେ ମହାପୁରୁଷ ମହମ୍ମଦ ଜ୍ୱରାକ୍ରାନ୍ତ ହୋଇ ନଶ୍ୱର ଦେହରୁ ମୁକ୍ତ ହୋଇ ପରଲୋକ ପ୍ରାପ୍ତ ହେଲେ । ତାହାଙ୍କର ଅନ୍ତିମ କାଳର ଶେଷ ବାକ୍ୟ "ପ୍ରଭୋ ! ତୁମ୍ଭର ଇଚ୍ଛା ପୂର୍ଣ୍ଣ ହେଉ" ଏହି କଥା କହୁଁ କହୁଁ ତାହାଙ୍କର ଚକ୍ଷୁ ଚିରକାଳ ନିମିତ୍ତ ନିମୀଳିତ ହେଲା । ଚହୁଁ ଚହୁଁ ମହାଶୋକ ସମଗ୍ର ଆରବଦେଶ ବ୍ୟାପିଗଲା । ସେ ଇହଲୋକରୁ ଚାଲିଗଲେ, କିନ୍ତୁ ତାଙ୍କ ପ୍ରଚାରିତ ଧର୍ମ ଦିନକୁଦିନ ପ୍ରସାରିତ ହୋଇ ପୃଥିବୀର ନାନା ଅଞ୍ଚଳରେ ବ୍ୟାପ୍ତ ହେଲା । ଆଧୁନିକ ଯୁଗରେ ପୃଥିବୀର-ପ୍ରାୟ ୩୦ କୋଟି ଲୋକ ମୁସଲମାନ୍‌ଧର୍ମାବଲମ୍ବୀ ଅଟନ୍ତି । ଯେଉଁ ଆରବ ଦେଶ ଅଜ୍ଞାନ କୁସଂସ୍କାରାଦିର ଅଭେଦ୍ୟ ଦୁର୍ଗସ୍ୱରୂପ ଥିଲା, ଯାହାର ଅଧିବାସିବର୍ଗ ସାଧାରଣତଃ ନରପିଶାଚବତ୍ ହିଂସା, ବିବାଦ, ହତ୍ୟା, ବ୍ୟଭିଚାର ପ୍ରଭୃତି ନାନା ପାପରେ କଳୁଷିତ ଥିଲେ ; ମହାପୁରୁଷ ମହମ୍ମଦଙ୍କର ଅଲୌକିକ ସତ୍ୟନିଷ୍ଠା, ଅଟଳ ଈଶ୍ୱରବିଶ୍ୱାସ ଓ ମହାଶ୍ଚର୍ଯ୍ୟ ଈଶ୍ୱର-ପ୍ରେମ ଦ୍ୱାରା ସେହି ଦେଶ ଓ ଜାତି ମଧ୍ୟରେ କି ଅଦ୍ଭୁତ ପରିବର୍ତ୍ତନ ସାଧିତ ହେଲା । ଏବଂ ପୃଥିବୀ ମଧ୍ୟରେ ନବଯୁଗର ଆବିର୍ଭାବ ହେଲା ! ଧର୍ମବିଶ୍ୱାସ ଓ ପ୍ରେମର କି ମହୀୟସୀ ଶକ୍ତି !

## ପ୍ରଶ୍ନ

୧ । ଆରବଦେଶର ପ୍ରାକୃତିକ ଅବସ୍ଥିତି ବର୍ଣ୍ଣନ କର ।

୨ । ମହମ୍ମଦଙ୍କର ଶୈଶବ ଓ ବାଲ୍ୟ ଜୀବନର ବୃତ୍ତାନ୍ତ ନିଜ ଭାଷାରେ ବୋଲ ।

୩ । ଇସଲାମ୍‌ଧର୍ମ ଗ୍ରହଣ କରିବା ପୂର୍ବେ ଆରବଦେଶୀୟ ଲୋକଙ୍କର ନୈତିକ ଅବସ୍ଥା କିପରି ଥିଲା ?

୪ । ସିନାଇ, କାବା ଓ କୋରାନ୍ କଣ ? ମହମ୍ମଦଙ୍କର ଧର୍ମମତ କି ? ମୁସାଙ୍କ ପ୍ରଚାରିତ ଦଶ ଆଜ୍ଞା କଣ ?

୫ । ମହମ୍ମଦଙ୍କର ଚରିତ୍ର ବର୍ଣ୍ଣନ କର ।

୬ । ଭୀଷଣ ମହିମା, କରୁଣାରୂପିଣୀ ନିର୍ଝରିଣୀ, ଅଶରୀରବାଣୀ, ସାମାଜିକ ଓ ନୈତିକ ଅବନତି, ଅପାର୍ଥିବ ମହାଭାବ, ଐହିକସୁଖଭୋଗାସକ୍ତ, ଏହି ବାକ୍ୟାଂଶମାନଙ୍କର ବ୍ୟାଖ୍ୟା କର ।

୭ । ଆବିର୍ଭାବ, ମହାପୁରୁଷ, ପାର୍ଥିବ, ଘୋଷଣା, ଉତ୍ସର୍ଗ, ସମାକୀର୍ଣ୍ଣ, ଏହି ପଦମାନଙ୍କର ବ୍ୟୁତ୍ପତ୍ତି କହ ।

୮ । ତପୋବଳ, ନବଜାତ, କ୍ଷତବିକ୍ଷତ, ପୁନର୍ନିର୍ବନ୍ଧେ, ସତ୍ୟବାଦୀ, ଏହି ପଦମାନଙ୍କର ସମାସ ବ୍ୟାଖ୍ୟା କର ।

## ଧ୍ୱନି

(ବାଙ୍ଗଲାଶ୍ରୀ ବୃତ୍ତ)

୧

ଶୁଣୁଅଛି ସର୍ବେ    ଦିବସ ରଜନୀ
ଜଗତର କୋଲାହଳ ।
କୋଟି କୋଟି ରବ    କୋଟି କୋଟି କଥା
ଶୁଣୁଅଛି ଅବିରଳ ।

୨

ଜଳଦର ମନ୍ଦ୍ର    ଜଳଧିର ଘୋଷ
ନିର୍ଝରିଣୀ-କଳସ୍ୱନ ।

ସମୀରପରଶେ କାନନ ମର୍ମ୍ମର,
ପ୍ରଭଞ୍ଜନ-ଗରଜନ ।

୩

ମଧୁପ ଗୁଞ୍ଜନ, ଝିଙ୍କାରୀ-ଝଙ୍କାର,
ବିହଙ୍ଗର କଣ୍ଠସ୍ୱର ।
ଉଷାର ବିମଳ- ମାଧୁରୀ-ପୂରିତ
ପୁଣ୍ୟଗୀତି ଭରତର ।

୪

କପୋତଦ୍ୱନ୍ଦର ବିକଳ କରୁଣ
ବିଳାପ-ପୂରିତ ଗାନ ।
ବସନ୍ତ-ବିଳାସୀ ପିକ ସ୍ୱାୟୁକର
ଲଳିତ ପଞ୍ଚମ ତାନ ।

୫

ଘନପଲ୍ଲବିତ ବନ ଗିରି କୁଞ୍ଜେ
ନଦୀ ସିନ୍ଧୁ ହ୍ରଦ ବକ୍ଷେ ।
କୋଠରେ ବିବରେ ପର୍ବତ କନ୍ଦରେ
କିବା ମୁକ୍ତ ଅନ୍ତରୀକ୍ଷେ ।

୬

ଶୁଣୁଛି ସର୍ବଦା କୋମଳ-କର୍କଶ
ମଧୁର ଭୈରବ ରବ ।
ପଶୁ ପକ୍ଷୀ କୀଟ ପତଙ୍ଗ ଶବଦେ
ପୂରିତ ବିପୁଳ ଭବ ।

୭

ପୁଣି ଶୁଣୁଅଛି ଗୋକାଳୟେ ବସି
ତରଳ ମଧୁର ଗୋଳ ।

କ୍ରୀଡ଼ା କୌତୁକର    କଲ୍ଲୋଳ ଉଚ୍ଛ୍ୱାସ,
ବାଳକବାଳିକା ମେଳ ।

୮

ବାଜୁଛି କାହିଁ ବା    ଉତ୍ସବ ବାଜଣା,
ଶୁଭୁଛି ଉତ୍ସବ ନାଦ ।
କାହିଁ ବା ଉଠୁଛି    କ୍ରନ୍ଦନର ରୋଳ,
କଲୁଷ-କଲହ-ବିବାଦ ।

୯

ଶିଶୁର ଦରୋଟି    ଅମୃତ ବଚନ
ସ୍ଥବିରର କ୍ଷୀଣ ଭାଷ,
ତରୁଣ ଜନର    ଉତ୍ସାହ-ପ୍ରଫୁଲ୍ଲ
ବଦନେ ଉଦ୍ଦାମ ହାସ ।

୧୦

ଗୁରୁଜନଙ୍କର    ସ୍ନେହାଦରମୟୀ
ପୁଣ୍ୟ ଉପଦେଶ ବାଣୀ ।
ଶିଷ୍ୟଜନଙ୍କର    ଭକ୍ତିପୂର୍ଣ୍ଣ କଥା
ଗୁରୁଙ୍କ ଗୌରବ ଜାଣି ।

୧୧

ହଳାହଳମୟ    ଛଳନା-ପୂରିତ
ନୀଚ ହୀନମତି କଥା ।
କ୍ରୋଧ ବିଦ୍ୱେଷର    ବିକଟ ଗର୍ଜ୍ଜନ
ଶୁଣିତ ଅଛୁ ସର୍ବଥା ।

୧୨

ଭକ୍ତ ରସନାର    ସୁଧାମୟ ମନ୍ତ୍ର
ବାଜଇ ଯା ପ୍ରାଣଯନ୍ତ୍ରେ ।

କବିର ଅମୃତ ସଙ୍ଗୀତ ଝଙ୍କାରେ
ଭାରତୀର ବୀଣାତନ୍ତ୍ରେ ।

୧୩

ସ୍ୱଦେଶବତ୍ସଳ ବୀରପୁରୁଷର
ମନ୍ତ୍ର ବାଣୀପରିଷଦ୍ରେ ।
ଶ୍ରବଣେ ଯାହାର ଅମୃତ ଉତ୍ସାହେ
ଜାଗିଉଠେ ମୃତ ଧରା ।

୧୪

ଏହିମତେ କୋଟି କୋଟି ଶବ୍ଦେ ପୂର୍ଣ୍ଣ
ଅନୁକ୍ଷଣ ଏ ଅବନୀ ;
କିନ୍ତୁ ଶୁଣିଛ କି ସେହି ଆଦିମୂଳ
ଅନାଦି ପରମ ଧ୍ୱନି ?

୧୫

ରୋମାଞ୍ଚ ପୂରିତ ପୁଲକିତ ଦେହେ
ଶୁଣ ଶୁଣ ବିଶ୍ୱଜନେ,
ବିଶ୍ୱ ରନ୍ଧ୍ରେ ରନ୍ଧ୍ରେ ଯେ ପରମ ଧ୍ୱନି
ଉଚ୍ଛ୍ୱସିତ ସଂଗୋପନେ ।

୧୬

ବିଶ୍ୱଭୁବନର ସୃଷ୍ଟି ସ୍ଥିତି ଲୟେ
ନିତ୍ୟ ଉଚ୍ଚାରିତ ବାଣୀ ।
ଅନାଦି ଅନନ୍ତ ଗମ୍ଭୀର ଅମୃତ
ଦ୍ୟୁଲୋକ-ଭୂଲୋକ-ରାଣୀ ।

୧୭

ସେ ଅମୃତମୟ ବାଣୀର ଶ୍ରବଣେ
ନାଚନ୍ତି ଗଗନେ ତାରା ।

ଭୁବନେ ଭୁବନେ ବହଇ ଆନନ୍ଦେ
ଜୀବନ-ଜାହ୍ନବୀ-ଧାର ।

୧୮

ଶୁଣ ଶୁଣ ଏବେ ସେ ବାଣୀ ତୋହର
ଅନ୍ତରେ ଅଛନ୍ତି ଜାଗି ।
ସନ୍ତତ ତୋ ପ୍ରାଣ— ମନ୍ଦିରବାସିନୀ
ତୋହର ଉଦ୍ଧାରେଁ ଲାଗି ।

୧୯

କହନ୍ତି ସେ ବାଣୀ, ଉଠ ଉଠ ବତ୍ସ :
ଅନାଥରେ ବାରେ ମୋତେ ;
ଅନନ୍ତ ପ୍ରେମର ନତ୍ୟ ଆଲିଙ୍ଗନେ
ଧରିଛି ମୁଁ ସଦା ତୋତେ ।

୨୦

କାହିଁ ଯାଉଛୁ ତୁ ? କି ଛନ୍ଦ ପଶ୍ଚାତେ
ବୁଲୁଛୁରେ ହୋଇ ବାଇ ?
ଅଶବ୍ଦ ଶବଦ ମୁଁ ତୋ ପ୍ରାଣେ ଅଛି
ଶୁଣ ଶୁଣ ସଦା ଆଇ ।

୨୧

ପ୍ରାଣର ନିର୍ମଳ ପ୍ରେମ ଦିଅ ମୋତେ
ମୁହିଁ ତ ତୋ ପ୍ରାଣସଖା ।
ମୋ ବାଣୀ ଶ୍ରବଣେ ଭାଜିବ ତୋହର
ବିଷାଦ ଜଞ୍ଜାଳ ଦକା ।

ପ୍ରଶ୍ନ

୧ । ମନ୍ଦ୍ର, ମର୍ମ୍ମର, ଗୁଞ୍ଜନ, ଝଙ୍କାର, ସ୍ୱର, ରବ, ରୋଳ, ଚହଳ ନାଦ

ଧ୍ୱନି, ଏହି ଶବ୍ଦମାନଙ୍କର ଅର୍ଥ ବିଶଦରୂପେ ବୋଲ ଏବଂ ପ୍ରତ୍ୟେକ ଶବ୍ଦକୁ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର ।

୨ । ପ୍ରଥମ ଶ୍ଳୋକର ଆରମ୍ଭରେ ଥିବା 'ଶୁଣୁଅଛି' କ୍ରିୟାର ସବୁ କର୍ମପଦଗୁଡ଼ିକ ନିର୍ଦ୍ଦେଶ କର ।

୩ । ସପ୍ତମ ଶ୍ଳୋକରେ 'ତରଳ ମଧୁର କୋଳ' ଏହି ବିଶେଷଣତ୍ରୟ କେଉଁ ବିଶେଷ୍ୟପଦମାନଙ୍କୁ ବିଶେଷିତ କରୁଅଛି ?

୪ । କଲୁଷ-କଲହ-ବାଦ, ଭାରତୀର ବୀଣାତନ୍ତ୍ରେ, ଆଦିମୂଳ ଅନାଦି ପରମଧ୍ୱନି, ମନ୍ତ୍ର ବାଣୀପରମ୍ପରା, ଦ୍ୟୁଲୋକ-ଭୂଲୋକ-ଶ୍ରେଣୀ ବାଣୀ, ଜୀବନ-ଜାହ୍ନବୀ-ଧାରା, ପ୍ରାଣମନ୍ଦିରବାସିନୀ ବାଣୀ, ଏହି ବାକ୍ୟାଂଶ-ମାନଙ୍କର ବିଶଦ ବ୍ୟାଖ୍ୟା କର ।

୫ । ପଞ୍ଚଦଶ ଶ୍ଳୋକଠାରୁ ଏକବିଂଶ ଶ୍ଳୋକ ପର୍ଯ୍ୟନ୍ତ ସମୁଦାୟକୁ ଗଦ୍ୟରେ ପରିଣତ କର ଏବଂ ସମଗ୍ର କବିତାର ସାରାଂଶ ଲେଖ ।

## ବାବର

ପୃଥିବୀର ଇତିହାସରେ କୀର୍ତ୍ତିତନାମା ନରପତିମାନଙ୍କ ମଧ୍ୟରେ ବାବର ଜଣେ ଅଲୋକସାମାନ୍ୟ ଅଦ୍ଭୁତବିକ୍ରମଶାଳୀ ବୀରପୁରୁଷ ଥିଲେ । ତାଙ୍କର ଜୀବନ ବହୁବିଧ ଅଦ୍ଭୁତ ଘଟଣାରାଜିରେ ପୂର୍ଣ୍ଣ ଥିଲା । ସେ ଯେପରି ସୁଦକ୍ଷ ଯୋଦ୍ଧା, ସେହିପରି ବିଦ୍ୟାବୁଦ୍ଧିସମ୍ପନ୍ନ ମନୀଷୀ ଥିଲେ । ସେ ଏକାଧାରରେ କବି, ଚିତ୍ରକର ଓ ସାହିତ୍ୟସେବକ ଥାଇ ଯେପରି ସୁରୁଚି ଓ କଳାକୌଶଳ ଦେଖାଇଅଛନ୍ତି, ତାହା ସମସ୍ତ ଅଭିଜ୍ଞ ଲୋକଙ୍କ ପ୍ରଶଂସିତ । ତାଙ୍କ ରଚିତ ଆତ୍ମଜୀବନଚରିତ ମଧ୍ୟରେ ତାଙ୍କର ଜୟପରାଜୟ କାର୍ଯ୍ୟ ଓ ଭାବନାର ସେ ଯେଉଁ ବିବରଣ ଲିପିବଦ୍ଧ କରି ଯାଇଅଛନ୍ତି, ତାହା ଅତ୍ୟନ୍ତ ମନୋହର । ଏସମସ୍ତ ସଦ୍ଗୁଣ ଛଡ଼ା ତାହାଙ୍କର ଆକୃତି ଓ ଆଚରଣରେ ଯେଉଁ ଅନିର୍ବଚନୀୟ ମାଧୁରୀ ଥିଲା, ତାହାଦ୍ୱାରା ଲୋକେ ସହଜରେ ତାଙ୍କଆଡ଼କୁ ଆକୃଷ୍ଟ ହେଉଥିଲେ ।

ବାବରଙ୍କର ପିତୃକୁଳ ତୁରଷ୍କଜାତୀୟ ମାତୃକୁଳ ମୋଗଲବଂଶୀୟ ଥିଲେ । ତାଙ୍କ ପିତା ମଧ୍ୟଆସିଆରେ ଥିବା ଫର୍ଗାନା ନାମକ କ୍ଷୁଦ୍ର ଭୂଖଣ୍ଡର ରାଜା ଥିଲେ । ସେ ପୁତ୍ରର ନାମ ଜହିର-ଉଦ୍ଦିନ୍ ରଖିଥିଲେ, କିନ୍ତୁ ମାତାମହ-ପ୍ରଦତ୍ତ ବାବର ନାମରେ ସେ ଜଗତରେ ପରିଚିତ । ବାବର ଶବ୍ଦର ଅର୍ଥ ବ୍ୟାଘ୍ର । ଦ୍ୱାଦଶବର୍ଷ ସମୟରେ ବାବର ପିତାଙ୍କୁ ହରାଇ ରାଜ୍ୟଭାର ଗ୍ରହଣ କଲେ । ତାହାଙ୍କର ଅଳ୍ପ ବୟସ ଦେଖି ଶତ୍ରୁମାନେ ତାଙ୍କ ରାଜ୍ୟ ଅପ-ହରଣ କରିବା ପାଇଁ କୁଟିଳ ଚକ୍ରାନ୍ତ କରିଥିଲେ, କିନ୍ତୁ ବିଧାତାଙ୍କର କୃପାରେ ସେ ଚକ୍ରାନ୍ତ ନିଷ୍ଫଳ ହେଲା । ତାହାଙ୍କର ମାତୁଳ ସମରଖଣ୍ଡ-



ବାବର

ଅଧିପତିଙ୍କର ମୃତ୍ୟୁଉତ୍ତାରେ ସେ ପଞ୍ଚଦଶବର୍ଷ ବୟଃକ୍ରମ କାଳରେ ସମରଖଣ୍ଡ ରାଜସିଂହାସନ ଅଧିକାର କଲେ । ସେଠାରେ ସେ ଏକଶତଦିବସମାତ୍ର ରାଜ-ପଦରେ ପ୍ରତିଷ୍ଠିତ ଥାଇ ନିଜ ପୈତୃକ ରାଜ୍ୟ ଫର୍ଗାନାରେ ବିଦ୍ରୋହ ଘଟିବାର ସଂବାଦ ପାଇଲାକ୍ଷଣି ରୁଗ୍ଣ ଅବସ୍ଥାରେ ସୁଦ୍ଧା ବିଦ୍ରୋହ ନିବାରଣାର୍ଥ ଯାତ୍ରା

କଲେ, କିନ୍ତୁ ମାର୍ଗରେ ପୀଡ଼ାର ଏପରି ବୃଦ୍ଧି ହେଲା ଯେ ତାଙ୍କର କେତେକ ଅନୁଚରେ ତାଙ୍କର ମୃତ୍ୟୁ ଆସନ୍ନ ବିଚାରି ତାଙ୍କୁ ପରିତ୍ୟାଗ କରି ଫର୍ଗାନାରେ ତାଙ୍କର ମୃତ୍ୟୁବାର୍ତ୍ତା ପ୍ରଚାର କରନ୍ତେ, ଫର୍ଗାନା ବିଦ୍ରୋହୀମାନଙ୍କ ଦଳପତିର ଅଧୀନତା ସ୍ୱୀକାର କରିବାକୁ ବାଧ୍ୟ ହେଲା । ସେହିପରି ତାଙ୍କ ଅନୁପସ୍ଥିତ ସମୟରେ ସମରଖଣ୍ଡ-ରାଜ୍ୟ ଶତ୍ରୁର କରକବଳିତ ହେଲା । ଏହିପରି ଉଭୟ ରାଜ୍ୟ ହରାଇ ବାବର ଦୁଇବର୍ଷକାଳ ବହୁ କଷ୍ଟ ସହି ଦୁର୍ଗମ ଅରଣ୍ୟ ଓ ପର୍ବତମାନଙ୍କରେ ପରିଭ୍ରମଣ କରିଥିଲେ ; କିନ୍ତୁ ଏହି ବିପଦଦୁର୍ଦ୍ଦିନରେ ସୁଦ୍ଧା ସେ ପ୍ରକୃତିର ବିଚିତ୍ର ସୌନ୍ଦର୍ଯ୍ୟ ସଂଭୋଗ କରି ପ୍ରସନ୍ନଚିତ୍ତରେ କାଳଯାପନ କରିଥିଲେ । ଅବଶେଷରେ ଦିନେ ସୂର୍ଯ୍ୟାସ୍ତକାଳରେ ତାଙ୍କର ମିତ୍ରମାନଙ୍କ ପ୍ରେରିତ ଜଣେ ଅଶ୍ୱାରୋହୀ ତାହାଙ୍କର ଆଶ୍ରିତ ବନପ୍ରଦେଶରେ ଉପସ୍ଥିତ ହୋଇ ଅନୁକୂଳବାର୍ତ୍ତା ପ୍ରଦାନ କରନ୍ତେ, ସେ ତତ୍‌କ୍ଷଣାତ୍ ଅଶ୍ୱପୃଷ୍ଠରେ ଫର୍ଗାନା ଅଭିମୁଖରେ ଯାତ୍ରା କଲେ ଏବଂ ତିନ ଦିନ ତିନି ରାତି ଅବିଶ୍ରାନ୍ତଭାବରେ ଚାଲି ଚାଲି ଫର୍ଗାନା ନଗରରେ ଉପସ୍ଥିତ ହୋଇ ବନ୍ଧୁମାନଙ୍କ ସାହାଯ୍ୟରେ ସ୍ୱରାଜ୍ୟ ପୁନଃ ପ୍ରାପ୍ତ ହେଲେ । କିନ୍ତୁ ରାଜ୍ୟର କେତେକ ହିତକାରୀ ଓ ଉତ୍ପୀଡ଼କ ଯୋଦ୍ଧୃବର୍ଗଙ୍କ ପ୍ରତି ହଠାତ୍ କଠୋର ଦଣ୍ଡ ବିଧାନ କରିବାକୁ ଯାଇ ସେମାନଙ୍କ ଚକ୍ରାନ୍ତରେ ସେ ଦ୍ୱିତୀୟବାର ରାଜସିଂହାସନରୁ ୧୫୦୦ ଖ୍ରୀଷ୍ଟାବ୍ଦରେ ତାଡ଼ିତ ହେଲେ । ସେତେବେଳେ ତାହାଙ୍କର ବୟସ ୧୭ ବର୍ଷ ମାତ୍ର । କିନ୍ତୁ ସେ ଏହି ଦୁର୍ଦ୍ଦଶାସମୟରେ ଏକାବେଳକେ ହତାଶ ନ ହୋଇ ସମରଖଣ୍ଡରାଜ୍ୟର ପୁନଃପ୍ରାପ୍ତି ନିମନ୍ତେ ସେ ଅଳ୍ପସଂଖ୍ୟକ ସୈନ୍ୟ ସହ ତଦଭିମୁଖେ ଯାତ୍ରା କଲେ । ଅତି କଷ୍ଟରେ ଘୋର ବନ୍ଧୁର ପଥ, ବନ୍ଧୁର ଦୁର୍ଗମ ଗିରିସଂକଟ ଏବଂ ଭୟଙ୍କର ଭିତ୍ତିମାନ ପାର ହୋଇ ଏବଂ ସୈନ୍ୟସଂଗ୍ରହପୂର୍ବକ ଯୁଦ୍ଧାନ୍ତେ ସମରଖଣ୍ଡ ଜୟ କଲେ । ଦୁଇବର୍ଷପରେ ସେ ପୁଣି ସମରଖଣ୍ଡରାଜ୍ୟ ହରାଇ ତିନିବର୍ଷକାଳ ପଶ୍ଚାଦ୍ଧାବିତ ଶତ୍ରୁକର୍ତ୍ତୃକ ଉତ୍ପୀଡ଼ିତ ହୋଇ କେତେବେଳେ ଦୁର୍ଗମ ଗହନରେ, କେତେବେଳେ ଭୀଷଣ ଗିରିକନ୍ଦରରେ ସପରିବାର ଆଶ୍ରୟ ଗ୍ରହଣ କରି ଅବଶେଷରେ ଅନୁକୂଳ ଦୈବପ୍ରଭାବରେ

ଗୋଟିଏ ମଧ୍ୟମଭଳ ସୈନ୍ୟ ଗଠନ କରି କାବୁଲ୍ ଆକ୍ରମଣ କଲେ ଏବଂ ଅଳ୍ପକାଳମଧ୍ୟରେ କାବୁଲ୍-ସିଂହାସନ ଆରୋହଣ କରି ସେଠାରେ ପ୍ରାୟ ଦଶବର୍ଷ ନିର୍ବିଘ୍ନରେ ରାଜତ୍ୱ କଲେ । ସେ ଆତ୍ମଜୀବନଚରିତରେ କାବୁଲର ଯେଉଁ ବିବରଣ ଲିପିବଦ୍ଧ କରି ଯାଇଅଛନ୍ତି, ସେଥିରୁ ଜଣାଯାଏ ଯେ କାବୁଲ୍-ରାଜ୍ୟସମ୍ବନ୍ଧରେ ଯାହା କିଛି ଜ୍ଞାତବ୍ୟ, ସେ ତାହା ଜାଣିଥିଲେ । ପ୍ରଜାମାନଙ୍କର ଅତୀତ ଇତିବୃତ୍ତ, ସେମାନଙ୍କର ଭିନ୍ନ ଭିନ୍ନ ଗୋଷ୍ଠୀର ଅବସ୍ଥା ଓ ଭାଷା, ରାଜ୍ୟର ପଶୁ ପକ୍ଷୀ ପୁଷ୍ପ ବୃକ୍ଷ ଫଳ ଇତ୍ୟାଦି ବିଷୟରେ ସେ ନିପୁଣରୂପେ ଅନୁସନ୍ଧାନ କରି ଯେଉଁ ବିବରଣ ଲେଖିଥିଲେ, ତାହାର ଯାଥାର୍ଥ୍ୟ ଓ ମନୋହାରିତା ସମସ୍ତେ ଏକବାକ୍ୟରେ ପ୍ରଶଂସା କରିଅଛନ୍ତି ।

ଇତିମଧ୍ୟେ ସମରଖଣ୍ଡ-ସିଂହାସନ ଅଧିରୋହଣକରିବାର ବାସନା ତାଙ୍କ ମନରେ ପୁଣି ଉଦ୍ଦୀପିତ ହେଲା ଏବଂ ସେ ପୁଣି ତାହା ଲାଭ କରି ପୁଣି ତାହା ଭାଗ୍ୟବିପର୍ଯ୍ୟୟ ଯୋଗୁଁ ହରାଇଲେ । ଏଥିଉତ୍ତାରେ ଭାରତବର୍ଷ ଉପରେ ତାହାଙ୍କର ଲୋଲୁପ ଦୃଷ୍ଟି ପଡ଼ିଲା । ସେ ବିଚାରିଲେ "ମୋର ପୂର୍ବପୁରୁଷ ତୈମୁର ଭାରତ ଜୟ କରିଥିଲେ, ମୁଁ କାହିଁକି ନ ପାରିବ ?"

୧୫୧୪ ଖ୍ରୀଷ୍ଟାବ୍ଦରେ ବାବର ପଞ୍ଜାବ ପ୍ରଥମ ଥର ଆକ୍ରମଣ କରିଥିଲେ । ତହିଁଉତ୍ତାରୁ ସେ ଆହୁରି ତିନିଥର କ୍ରମିକ ଅଭିଯାନଦ୍ୱାରା ପଞ୍ଜାବ ଅଧିକାର କରି ସେଠାରେ ଜଣେ ଶାସନକର୍ତ୍ତା ନିଯୁକ୍ତ କରି ଯାଇଥିଲେ । ୧୫୨୪ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀର ସମ୍ରାଟ୍ ସେକେନ୍ଦର ଲୋଦିଙ୍କର ମୃତ୍ୟୁଉତ୍ତାରେ ତାଙ୍କର ପୁତ୍ର ଇବ୍ରାହିମ୍ ଲୋଦି ସିଂହାସନ ଆରୋହଣ କଲେ । ସେ ଅହଙ୍କାରୀ ଓ ନିଷ୍ଠୁର-ପ୍ରକୃତିକ ଥିଲେ । ସେ ସମସ୍ତଙ୍କୁ ହେୟଜ୍ଞାନ କରି ନାନାପ୍ରକାରି ଅତ୍ୟାଚାର କରିବାରୁ ତାଙ୍କ ବିରୁଦ୍ଧରେ ନାନା ସ୍ଥାନରେ ବିଦ୍ରୋହ-ପତାକା ଉଡ୍ଡୀନ ହେଲା । ବଙ୍ଗ, ମାଳବ, ଗୁଜରାଟର ଶାସନକର୍ତ୍ତାମାନେ ସ୍ୱାଧୀନତା ଘୋଷଣା କଲେ । ରାଜପୁତ ରାଜାମାନେ ସମ୍ରାଟ୍ ଇବ୍ରାହିମ ଲୋଦିଙ୍କ ବିରୁଦ୍ଧରେ ସଙ୍ଘିତ ହେଲେ । ଏହିପ୍ରକାର ଅରାଜକତା ସମୟରେ ବାବର ତାଙ୍କର ଅଭିଳାଷର ଅନୁକୂଳ ସୁଯୋଗ ପାଇ କାବୁଲରୁ ଦିଲ୍ଲୀ ଅଭିମୁଖରେ ଅଗ୍ରସର ହେଲେ, ଏବଂ

ମାର୍ଗରେ ଥିବା ବାଧାବିଘ୍ନ ଅତିକ୍ରମ କରି ପାନିପଥ ନାମକ ବିଖ୍ୟାତ ସ୍ଥାନର ନିକଟବର୍ତ୍ତୀ ହେଲେ । ସେହି ସ୍ଥାନରେ ମୋଗଲ୍ ଓ ପଠାଣ ସୈନ୍ୟ ସ୍ୱସ୍ୱ ଭାଗ୍ୟପରୀକ୍ଷା ନିମିତ୍ତ ପରସ୍ପରର ପ୍ରତିପକ୍ଷରେ ଦଣ୍ଡାୟମାନ ହେଲେ । ଇବ୍ରାହିମ୍ ଏକଲକ୍ଷ ସୈନ୍ୟ ଓ ଏକସହସ୍ର ହସ୍ତୀଘେନି ସେଠାରେ ଉପସ୍ଥିତ ହୋଇଥିଲେ । ବାବରଙ୍କର କେବଳ ଦ୍ୱାଦଶସହସ୍ର ସୈନ୍ୟ ଥିଲା । ୧୫୨୬ ଖ୍ରୀଷ୍ଟାବ୍ଦର ଏପ୍ରେଲ ୨୧ ତାରଖ ଦିନ ସୂର୍ଯ୍ୟୋଦୟକାଳରୁ ମଧ୍ୟାହ୍ନକାଳ ପର୍ଯ୍ୟନ୍ତ ଘୋର ସଂଗ୍ରାମ ହେଲା, ପରିଶେଷରେ ଇବ୍ରାହିମ୍ ପରାସ୍ତ ଓ ନିହତ ହେଲେ । ଯୁଦ୍ଧାବସାନରେ ଦିଲ୍ଲୀ ନଗରୀ ବାବରଙ୍କର ହସ୍ତଗତ ହେଲା । ତହିଁଉତ୍ତାରେ ସେ ଅଗ୍ରସର ହୋଇ ଆଗ୍ରାନଗରୀ ଅଧିକାର କଲେ । ସେହି ସ୍ଥାନରେ ନିହତ ଶତ୍ରୁ ଇବ୍ରାହିମଙ୍କର ମାତା ଓ ପରିବାରବର୍ଗଙ୍କୁ ଯଥେଷ୍ଟ ସମାଦର କରି ସେମାନଙ୍କ ପାଇଁ ବୃତ୍ତି ଖଞ୍ଜିଦେଇ ଅଭୟ ପ୍ରଦାନ କଲେ ଏବଂ ରାଜକର୍ମଚାରୀ ଓ ପ୍ରଜା-ମାନଙ୍କୁ ଅପରିମିତ ଅର୍ଥ ବିତରଣ କଲେ । ଏହି ମହାଦାନଶୀଳତା ନିମିତ୍ତ ବାବର କଲନ୍ଦର * ବୋଲି ଅଭିହିତ ହୋଇଥିଲେ ।

ଏଥିଉତ୍ତାରେ ରାଜପୁତନାର ସୁପ୍ରସିଦ୍ଧ ମେବାରରାଜ୍ୟର ଅଧିପତି ବୀରା-ଗ୍ରଗଣ୍ୟ ରାଣା ସଙ୍ଗ ବାବରଙ୍କ ଆଧିପତ୍ୟ ସ୍ୱୀକାର ନ କରି ତାଙ୍କ ସଙ୍ଗରେ ଘୋର ରଣରେ ପ୍ରବୃତ୍ତ ହେଲେ । ଏକ ପକ୍ଷରେ ରାଜପୁତକେଶରୀ ସଙ୍ଗ ମହାଯୋଦ୍ଧା, ଅପର ପକ୍ଷରେ ମହାବୀର ବାବର ପ୍ରତିଯୋଦ୍ଧା । ପ୍ରାତଃକାଳରୁ ସାୟଂକାଳ ପର୍ଯ୍ୟନ୍ତ ଆଗ୍ରାର ବିଂଶକ୍ରୋଶ ଦୂରରେ ଅବସ୍ଥିତ ସିକ୍ରି ନାମକ ସ୍ଥାନରେ ତୁମୁଳ ସଂଗ୍ରାମ ହେଲା । ବ୍ୟୂହ ରଚନାର ନିପୁଣତାହିଁ ବାବରଙ୍କୁ ବିଜୟୀ କରାଇଲା । ତଦନନ୍ତର ସେ କିଛିକାଳ ସାମ୍ରାଜ୍ୟର ଆଭ୍ୟନ୍ତରିକ ସୁବ୍ୟବସ୍ଥା କରିବାରେ ନିଯୁକ୍ତ ରହିଲେ ଏବଂ ଶେଷକାଳରେ ଆଗ୍ରାନଗରକୁ ନାନା ମନୋହର କୁସୁମୋଦ୍ୟାନ ଓ ରାଜପ୍ରାସାଦ ଦ୍ୱାରା ଅଲଙ୍କୃତ କଲେ ।

ବାବରଙ୍କ ଜୀବନର ଶେଷବର୍ଷ ଅର୍ଥାତ୍ ୧୫୩୦ ଖ୍ରୀଷ୍ଟାବ୍ଦରେ ତାଙ୍କପୁତ୍ର

---

* ପରିଦିବସ ନିମିତ୍ତ ଯେ କିଛିମାତ୍ର ଆପଣା ପାଇଁ ନ ରଖି ସମୁଦାୟ ଦାନ କରେ ତାହାକୁ ମୁସଲମାନମାନେ କଲନ୍ଦର କହନ୍ତି ।

ହୁମାୟୁନ୍ ସଙ୍କଟପୀଡ଼ାକ୍ରାନ୍ତ ହେଲେ । ଚିକିତ୍ସକମାନେ ନିରାଶ ହୋଇ ଦୈବ-କୃପା ବିନା ଜୀବନରକ୍ଷାର ଆଉ ଉପାୟ ନାହିଁ କହିବାରୁ, ସେ ପୁତ୍ରର ରୋଗ-ଶଯ୍ୟାକୁ ପ୍ରଦକ୍ଷିଣ କରି ଈଶ୍ୱରଙ୍କୁ ପ୍ରାର୍ଥନା କରି କହିଲେ "ମୋ ପୁତ୍ରର ଜୀବନ ପରିବର୍ତ୍ତରେ ମୋର ଜୀବନ ଗୃହୀତ ହେଉ ।" ମହାଶ୍ଚର୍ଯ୍ୟର ବିଷୟ ଯେ, ସେହି ସମୟରୁ ପୁତ୍ରର ରୋଗ ଉପଶାନ୍ତ ହେବାକୁ ଲାଗିଲା ଏବଂ ବାବର ସଙ୍କଟ ରୋଗରେ ପଡ଼ି ଊନପଞ୍ଚାଶତ୍ତ ବର୍ଷ ବୟସରେ ମାନବଲୀଳା ସମ୍ବରଣ କଲେ । ଅଲୌକିକ ଶୌର୍ଯ୍ୟରେ, ସହୃଦୟ ଦୟାଦାକ୍ଷିଣ୍ୟରେ ଏବଂ ନାନା ସଦ୍ଗୁଣରେ ତାହାଙ୍କର ଚରିତ୍ର ଭୂଷିତ ଥିଲା ।

## ପ୍ରଶ୍ନ

୧ । କୀର୍ତ୍ତିତନାମା, ଘଟନାବଳି, ଆତ୍ମଜୀବନ, ମହାଶ୍ଚର୍ଯ୍ୟ, ବୁଦ୍ଧିସମ୍ପନ୍ନ, ଏହି ପଦମାନଙ୍କର ସମାସ ବ୍ୟାଖ୍ୟା କର ।

୨ । ବାବରଙ୍କର ପ୍ରଥମ ଜୀବନର ବୃତ୍ତାନ୍ତ ଲେଖ ।

୩ । ଇତିହାସ, ମନୀଷୀ, ଅଭିଜ୍ଞ, ମାଧୁର୍ଯ୍ୟ, ପ୍ରଦକ୍ଷିଣ, ବ୍ୟବସ୍ଥା, ଚିକ୍ରାନ୍ତ, ବିପର୍ଯ୍ୟୟ, ଏହି ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ଓ ବ୍ୟୁତ୍ପତ୍ତିମୂଳକ ଅର୍ଥ ବୋ[redacted]

୪ । ବାବରଙ୍କ ଜୀବନ-ଚରିତପାଠରୁ କି କି ଉପଦେଶ ଗ୍ରହଣୀୟ ?

୫ । ପ୍ରଥମ ପାନିପଥଯୁଦ୍ଧ ଓ ସିକ୍ରିଯୁଦ୍ଧର ବିବରଣ ଲେଖ ।

# ମହାଦେବୀ ଭିକ୍ଟୋରିୟା

( ରସକୁଲ୍ୟା ବୃତ୍ତ )

୧

ମହା ମୃତ୍ୟୁ-ଶୋକ-ତାମସୀ ଛାୟା
ସହସା ବିସ୍ତାରି ବିରାଟ କାୟା,

ଘୋଷିଯାଇଅଛୁ ନଖିଳ ମହୀ
ଦାରୁଣ ନବେଦ-ମାରୁତ ବହି
ନଭାଇଛୁ ମହାଣ୍ଡାଟେ,
ହର୍ଷ-ଦୀପ-ଶିଖା ସହସ୍ର ପ୍ରଦେଶେ
କୋଟି କୁଟୀ ସୌଧବାସେ ।

୨

ମା ନାମ ମହିମା ମହୀମଣ୍ଡଳେ,
ମା ନାମର ଶାନ୍ତ ତପନତଳେ,
ମା ନାମ ମାଧୁରୀ ମାନବପ୍ରାଣେ,
ଜ୍ୱଳନ୍ତ ଜୀବନ୍ତ ଧ୍ରୁବ ପ୍ରମାଣେ,
ଯାର ପ୍ରାଣେ ପ୍ରମାଣିତ ;
ସେହି ମହାଦେବୀ ମାତା ଭକ୍ତୋରଥ
ଭୂବଧାମୁଁ ତରୋହିତ ।

୩

ଅର୍ଦ୍ଧ ଧରଣୀର ଅଧି-ଈଶ୍ୱରୀ,
ବ୍ରିଟିଶସାମ୍ରାଜ୍ୟ-ଲକ୍ଷ୍ମୀ ଶଙ୍କରୀ,
ଭାରତସାମ୍ରାଜ୍ଞୀ ଶ୍ରୀ ମହାରାଣୀ,
ରାଜରାଜେଶ୍ୱରୀ ନାରୀ ଇନ୍ଦ୍ରାଣୀ,
ସର୍ବମନୁଜବନ୍ଦିତା,
ସତୀଶିରୋମଣୀ ସାମ୍ରାଜ୍ଞୀ ଜନନୀ
ପୁଣ୍ୟମୟୀ ଅନନ୍ଦିତା ।

୪

ଆସିଆ ୟୁରୋପ ଆମେରିକାରେ,
ପୁଣି ଅଷ୍ଟ୍ରେଲିଆ ଆଫ୍ରିକାରେ,

ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମେ,
ବିଷୁବ-ଉତ୍ତାପେ ମେରୁର ହିମେ,
ପ୍ରତିଷ୍ଠିତ ଯା'ର ନାମ,
ଯାର ରାଜ୍ୟ କେବେଁ     ନୁହେ ଅସ୍ତମିତ
ଦିନମଣି ତେଜୋଧାମ ।

୫

"ଭିକ୍ଟୋରିଆ ଯୁଗ" ଅମରାକ୍ଷରେ
ଯା ନାମ ଖୋଦିତ କାଳବକ୍ଷରେ,
ଯାର ରାଜଶକ୍ତି, ରାଜମହିମା,
ବିପୁଳ ରାଜଶ୍ରୀ, ରାଜଗରିମା,
ପ୍ରତିଷ୍ଠିତ ଦେଶେ କାଳେ,
ସୁଚିର ରାଜତ୍ୱ     ଯାହାର ଶୋଭିତ
ମହାକୀର୍ତ୍ତିମଣିମାଳେ ।

୬

ଯାର ଦୟା କ୍ଷମା ଶାନ୍ତି ସୁଧାରେ
ସୁଧାସିକ୍ତ ଆହା ଏ ବସୁଧାରେ
ରାଜଦଣ୍ଡନୀତି ରାଜଶାସନ ;
ହୃଦ ଯା'ର ପୁଣ୍ୟ ସ୍ନେହ-ଭବନ,
ପୁଣ୍ୟଶ୍ଳୋକ ଯା ଚରିତ,
ମୈତ୍ରୀ ଅନୁକମ୍ପା     ବାତ୍ସଲ୍ୟ କରୁଣା
ଅମୃତ ରସେ ପୂରିତ ।

୭

ପ୍ରାଣାଧିକ ତବ ପ୍ରଜାମଣ୍ଡଳୀ,
ପ୍ରଜାସ୍ନେହ ପୁତ୍ରସ୍ନେହକୁ ବଳି,

ଦୀନ ପ୍ରଜାଙ୍କର ଦୁଃଖକୁ ଜାଣି,
ଭିକ୍ଟୋରିଏ ! ଶତ ଆଶ୍ୱାସବାଣୀ
ଭାଷୁଥିଲ ସ୍ନେହଭରେ ;
ଜଗଦମ୍ବାପ୍ରାୟେ ପ୍ରଜାଙ୍କ ଜନନୀ
ଥିଲ ଏହି ଜଗତରେ ।

୮

ଅଦ୍ଭୁତ ଘଟନ ତବ ଶାସନେ
କରିଲା ବିସ୍ମିତ ବିଶ୍ୱଭୁବନେ,
ସବଳ୍କୁ ବିଦ୍ୟୁତ, ବହ୍ନି, ବରୁଣ,
ଜ୍ୟୋତିର୍ମୟ ଦେବ ଭାସ୍କର ପୁଣ,
କିଙ୍କରପ୍ରାୟେ ତୋ ପଦେ :
ଖଣ୍ଡି ଦିବାନିଶି ବଢ଼ାଇଲେ ପ୍ରଜା-
ମଙ୍ଗଳ ସୁଖ ସମ୍ପଦେ ।

୯

କ୍ଷଣକେ ବିହରି ସହସ୍ର ଦେଶ,
କ୍ଷଣପ୍ରଭା କ୍ଷଣେ ବହେ ସନ୍ଦେଶ
ବାହି ବରୁଣ ବହ୍ନିସଙ୍ଗତେ
ବାଷ୍ପୀୟ ତରଣୀ ବାଷ୍ପୀୟ ରଥେ
ଜଳେ ସ୍ଥଳେ ବିହାୟସେ ।
ଆଦ୍ୟତ ତହିଁ ଆଲେଖ୍ୟନିକର
ରଞ୍ଜନ-କର-ପରଶେ ।

୧୦

ତବ ଜ୍ଞାନ-ପ୍ରେମ-ବଳ ଅତୁଳ
ତର ଅବଜ୍ଞାତ ଅବଳାକୁଳ—

କଳଙ୍କଭଞ୍ଜନ ମାନବର୍ଦ୍ଧନେ
ବହିଲି ବିପ୍ଳବ ଭୂବ-ଭବନେ
ତେଣୁ ମହିଳା-ସମ୍ମାନ
ମହିମହନୀୟ ବୋଲି ଜଗତରେ
ହେଉଅଛୁ ବର୍ଦ୍ଧମାନ ।

୧୧

ଶ୍ୱେତ କୃଷ୍ଣ ଅବା ହିନ୍ଦୁ ଖ୍ରୀଷ୍ଟାନ,
ବୌଦ୍ଧ ଜୈନ କିମ୍ବା ମୁସଲମାନ,
ପ୍ରାଚ୍ୟ ବା ପାଶ୍ଚାତ୍ୟ ସମ ତୁମଠାରେ
ପ୍ରଜାନିର୍ବିଶେଷେ ଥିଲେ ସଂସାରେ,
ପ୍ରଜାସୁଖେ ଆନନ୍ଦିତା,
ପ୍ରଜାର ଦୁଃଖରେ ସତତ କାତରା
ଦୟାମୟୀ ଅନନ୍ଦିତା ।

୧୨

ତବ ପୁଣ୍ୟ ତେଜେ ପବିତ୍ରପ୍ରଭା
ତବ ରାଜସଭା ପୁଣ୍ୟସୌରଭା,
ମହାକବି ମହାଜ୍ଞର ସଙ୍ଗମେ,
ପୁଣି ଗୁଣବତୀ ନାରୀରତନେ,
ସେ ସଭା ସଦା ଉଜ୍ଜ୍ୱଳ ।
ଭବିଷ୍ୟ ଭାରତୀ କବି ପତିଙ୍କର
ତବ ଜୀବନେ ସଫଳ ।

୧୩

ଶ୍ୱେତଦ୍ୱୀପଦେବୀ ଲକ୍ଷ୍ମୀରୂପିଣୀ,
କୋଟି ହୃଦ ପଦ୍ମ ବନ ବାସିନୀ ।

'ପୁଣ୍ୟମୟୀ ଦୁର୍ଗେ ନର ସମାଜେ,
ବିକ୍ରିଶଙ୍କେଶର୍ଣ୍ଣ ଶ୍ରୀପଦେ ରାଜେ ।
'ଆଶାମୃତନସ୍ୟନ୍ଦନୀ ।
ନଗଣ ଭାରତ- ଆଶ୍ୱାସଦାୟିନୀ
ଦେବୀ ଭାରତୀରୂପିଣୀ ।

୧୪

ଶାନ୍ତି-ମନ୍ତ୍ର-ପୂତ ମହା ଘୋଷଣା
ପ୍ରତ୍ୟକ୍ଷ ଭାରତେ ଦେଲ ସାନ୍ତ୍ୱନା ।
ସେ ଶୁଭ ଭାରତୀ-ବୀଣାର ସ୍ୱରେ
ଜାଗିଉଠେ ପ୍ରାଣ ଏ ଭାରତରେ,
ଧନ୍ୟ ସେ ଘୋଷଣ ସ୍ୱନ,
ମୋହ ଆବରଣ କର ଉନ୍ମୋଚନ
ଆଣେ ନବ ଜାଗରଣ ।

୧୫

ଗୃହେ ସୁଗୃହିଣୀ ସୁପତିବ୍ରତା,
ଜୀବନେ ମରଣେ ପତି-ଦେବତା,
ପତି ପାଦପଦ୍ମେ ମତି ଯାହାର
କମଳେ କମଳାସମ ଉଦାର ।
ତାର ବୈଧବ୍ୟ-ଶୋକରେ
ପୁଣ୍ୟ ବ୍ରହ୍ମଚର୍ଯ୍ୟ ଆଚରିଲ ସତୀ !
ମହା ପ୍ରେମ ଭକ୍ତିଭରେ ।

୧୬

ଆସନ୍ନେ ପ୍ରାଣର ଅନ୍ତିମ ଯାମ,
ଇଷ୍ଟମନ୍ତ୍ରରୂପେ ସ୍ୱାମୀଙ୍କ ନାମ

ପ୍ରେମେ ଜପି, କରି ଶାନ୍ତିବାଚନ
କଲ ଆନନ୍ଦରେ ସ୍ୱର୍ଗାରୋହଣ
ଧନ୍ୟ ଧନ୍ୟ ମହାସତୀ,
କାହିଁ ତବ ସମା ସାମ୍ରାଜ୍ଞୀ ଜନନୀ
ପତିବ୍ରତା ପୁଣ୍ୟବତୀ ?

୧୭

ତୁହି ରହିଥିଲ ସ୍ୱର୍ଗୀୟ ଆଶେ
ଯିବ ବୋଲି ପ୍ରିୟତମଙ୍କ ପାଶେ ।
ଯଥାକାଳେ ସ୍ୱର୍ଗେ ଭେଟିଲ ଯାଇଁ
ପ୍ରାଣ-ଅଭିରାମ ହୃଦୟ-ସାଇଁ ।
ଭେଟିଲେ ଆହା ଯେସନ,
ଶ୍ରୀରାମେ ବୈଦେହୀ ଦଇବବିଧାନେ
ସହି ବିଚ୍ଛେଦ-କଷଣ ।

ପ୍ରଶ୍ନ

୧ । ମହାଦେବୀ ଭିକ୍ଟୋରିଆଙ୍କର ଜୀବନ-ଚରିତ ସଂକ୍ଷେପରେ ବୋଲ । ତାଙ୍କ ଉତ୍ତାରେ କଏ ବ୍ରିଟିଶସାମ୍ରାଜ୍ୟରେ ସମ୍ରାଟ୍ ହେଲେ ? ବର୍ତ୍ତମାନ କଏ ବ୍ରିଟିଶସାମ୍ରାଜ୍ୟର ସମ୍ରାଟ୍ ଅଟନ୍ତି ?

୨ । ମହାମୃତ୍ୟୁଶୋକ-ତାମସୀ ଛାୟା, ବିଷୁବ-ଉତ୍ତାପେ, ପୁଣ୍ୟଶ୍ଳୋକ ଯା ଚରିତ, ରଞ୍ଜନ-କର-ପରଶେ, ଅବଜ୍ଞାତ, ଅବଳା-କୁଳକଳଙ୍କ-ଭଞ୍ଜନ, ପୁଣ୍ୟସୌରଭ ରାଜସଭା, ଜୀବନେ ମରଣେ ପତିଦେବତା, ସୁଧାସିକ୍ତ ଆହା ଏ ବସୁଧାରେ, ରାଜଦଣ୍ଡମାତ୍ର ରାଜଶାସନ, ଏହି ଉଦ୍ଧୃତାଂଶମାନ ସୁସ୍ପଷ୍ଟରୂପେ ବ୍ୟାଖ୍ୟା କର ।

୩ । ଯାଁର ରାଜତ୍ୱ କେବେହେଁ କୁହେ ଅସ୍ତମିତ ଦିନମଣି ତେଜୋଧାମ, ଏହି ବାକ୍ୟର ଯଥାର୍ଥତା ପ୍ରତିପାଦନ କର ।

୪ । କାହାର କେଉଁ ସମୟର କେଉଁ ଘୋଷଣା ଶାନ୍ତି-ମନ୍ତ୍ରପୂତ ମହା-ଘୋଷଣା ବୋଲି ବର୍ଣ୍ଣିତ ହୋଇଅଛି ? ସେ ଘୋଷଣାର ସାର କଥା ବୋଲ ।

୫ । ସ୍ଥାଇଁ, ନିଭାଇଛି, ପରଖ, ବିଜୁଳି, ମହୁଡ଼, ବହିଲେ, ଭିଆଣ, ଏହି ଶବ୍ଦମାନ କେଉଁ କେଉଁ ଶବ୍ଦର ଅପଭ୍ରଂଶ ?

୬ । ଭିକ୍ଟୋରିଆଦେବୀଙ୍କର ରାଜତ୍ୱ କାଳରେ ବିଜ୍ଞାନ ବିଷୟରେ କି କି ଉନ୍ନତି ହୋଇଥିଲା ?

୭ । ରାଜ-ଭକ୍ତି ବିଷୟରେ ଗୋଟିଏ ପ୍ରବନ୍ଧ ଲେଖ ।

## ଅଶୋକ

ପୃଥିବୀର ଇତିହାସରେ ସଂକୀର୍ତ୍ତିତ ଯେଉଁ ନରପତିମାନେ ନିଜର ଦେବୋପମ ସୁନିର୍ମଳ ଚରିତ୍ରର ଏବଂ ଲୋକୋତ୍ତର ଲୋକହିତକର ଜୀବନର ଶୁଭ୍ରାଲୋକଦ୍ୱାରା ନିଖିଳ ସଂସାରର ମୁଖ ଉଜ୍ଜ୍ୱଳ କରି ଯାଇଅଛନ୍ତି, ସେମାନଙ୍କ ମଧ୍ୟରେ ପ୍ରାଚୀନଭାରତର ବୌଦ୍ଧନୃପତି ପୁଣ୍ୟଶ୍ଳୋକ ମହାରାଜ ଅଶୋକ ଜଣେ ଅଗ୍ରଗଣ୍ୟ ରାଜା ଥିଲେ । ହିଂସାପ୍ରଣୋଦିତ ତରବାରିର ଜୟ ଜୟ ନୁହେ, ଧର୍ମର ଅର୍ଥାତ୍ ଅହିଂସା, ଦୟା ଓ ପବିତ୍ରତାର ଜୟ ଏକା ଜୟ ଅଟେ, ଏହି ମହୋଦାର ସ୍ୱର୍ଗୀୟ ନୀତି ତାହାଙ୍କର ଭାରତସାମ୍ରାଜ୍ୟ ଶାସନର ମୂଳମନ୍ତ୍ର ଥିଲା । ଭାରତବର୍ଷରେ ତାହାଙ୍କର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କୌଣସି ରାଜା ତାଙ୍କ ଅପେକ୍ଷା ବିପୁଳତର-ପ୍ରଭାବ-ବିସ୍ତାର ବା ମହତ୍ତର-କୀର୍ତ୍ତିସଂସ୍ଥାପନ କରିପାରି ନାହାନ୍ତି । ଭୁବନବିଖ୍ୟାତ ବିକ୍ରମାଦିତ୍ୟ ଏବଂ ଆକବରଙ୍କର ଯଶୋ-ମହିମା ସୁମହାନ୍ ହେଲେହେଁ, ଅଶୋକଙ୍କର ଯଶଃପ୍ରଭା ଅପେକ୍ଷା ଉଜ୍ଜ୍ୱଳତର

କୁହେ । ସମଗ୍ର ଅବନୀମଣ୍ଡଳ ମଧ୍ୟରେ ଉଦାର ଦୟା ଏବଂ ବିଶୁଦ୍ଧ ନୀତି ବିଷୟରେ ତାଙ୍କ ଅପେକ୍ଷା ଶ୍ରେଷ୍ଠତର ଭୂପତି ଜନ୍ମଗ୍ରହଣ କରି ନାହାନ୍ତି



ଅଶୋକ ସ୍ତମ୍ଭ

କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହାଙ୍କର ଶାସନପ୍ରଭାବ ସମଗ୍ର ଭାରତ ଅତିକ୍ରମ କରି ଉତ୍ତରପଶ୍ଚିମରେ ବାହ୍ଲୀକ, ଗାନ୍ଧାର, ସିରିଆ, ମିଶର, ଗ୍ରୀସ୍ ପ୍ରଭୃତି ଦେଶ ପର୍ଯ୍ୟନ୍ତ, ଦକ୍ଷିଣରେ ସିଂହଳ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଥିଲା ।

ଗ୍ରୀସୀୟ ଦିଗ୍ବିଜୟୀ ମହାବୀର ଆଲେକ୍‌ଜାଣ୍ଡରଙ୍କର ପ୍ରସିଦ୍ଧ ସେନାନୀ ସେଲିଉକସ୍ ଯେଉଁ ମୌର୍ଯ୍ୟକୁଳସ୍ଥାପୟିତା ମଗଧେଶ୍ୱର ଚନ୍ଦ୍ରଗୁପ୍ତଙ୍କ ସହିତ

ସଂଗ୍ରାମ କରି ପରାଭବ ସ୍ୱୀକାରପୂର୍ବକ ତାଙ୍କ ସଙ୍ଗରେ ସନ୍ଧିସୂତ୍ରରେ ଆବଦ୍ଧ ହୋଇ ତାହାଙ୍କୁ ସ୍ୱୀୟ କନ୍ୟା ସମ୍ପ୍ରଦାନ କରିଥିଲେ, ସେହି ମହାରାଜ ଚନ୍ଦ୍ରଗୁପ୍ତ ଅଶୋକଙ୍କର ପିତାମହ ଥିଲେ ଏବଂ ପିତୃଗୌରବବର୍ଦ୍ଧନ ମହାରାଜ ବିନ୍ଦୁସାର ଅଶୋକଙ୍କର ଜନକ ଥିଲେ ।

"ଅଶୋକ-ଅବଦାନ" ନାମକ ବୌଦ୍ଧଗ୍ରନ୍ଥର ବିବରଣ ଅନୁସାରେ ପାଟଳିପୁତ୍ରର ଜଣେ ବ୍ରାହ୍ମଣ କୌଣସି ଜ୍ୟୋତିଷାଚାର୍ଯ୍ୟଙ୍କ ନିକଟରୁ ସୁଭଦ୍ରାଙ୍ଗୀ ନାମ୍ନୀ ନିଜ ଦୁହିତାର ଭାବି-ରାଜ-ମହିଷୀତ୍ୱ ସମ୍ବନ୍ଧରେ ଭବିଷ୍ୟଦ୍‌ବାଣୀ ଶ୍ରବଣ କରି ସେହି ବାଣୀକୁ ଫଳବତୀ କରିବା ଆଶାରେ ଉକ୍ତ କନ୍ୟାକୁ ମହାରାଜ ବିନ୍ଦୁସାରଙ୍କୁ ପ୍ରଦାନ କରିଥିଲେ । ବିନ୍ଦୁସାର କନ୍ୟାର ଅସାମାନ୍ୟ ରୂପଲାବଣ୍ୟ ଏବଂ ଧୀମତ୍ତା ଦର୍ଶନ କରି ଏକାନ୍ତ ପ୍ରୀତ ହୋଇ ତାହାର ପାଣିଗ୍ରହଣ କଲେ । ଅଶୋକ ଏହି ଦମ୍ପତିର ସନ୍ତାନ । କଥିତ ଅଛି ଯେ ଅଶୋକ କଦାକାର ଥିଲେ ଏବଂ କୈଶୋର ଓ ଯୌବନରେ ତାହାଙ୍କର ପ୍ରକୃତି ନିତାନ୍ତ ଉଗ୍ର ଓ କୋପନ ଥିବାରୁ ସେ ଚଣ୍ଡାଶୋକ ନାମରେ ଅଭିହିତ ହୋଇଥିଲେ ଏବଂ ସେହି ହେତୁରୁ ନିଜ ପିତାଙ୍କର ମଧ୍ୟ ବିରାଗଭାଜନ ହୋଇଥିଲେ । ଅଶୋକଙ୍କର କନିଷ୍ଠ ଏବଂ ଏକମାତ୍ର ସହୋଦରଙ୍କର ନାମ ବୀତ-ଶୋକ ଏବଂ ତାହାଙ୍କର ବୈମାତ୍ରେୟ ଅଗ୍ରଜ ଭ୍ରାତାଙ୍କର ନାମ ସୁଷୀମ ଥିଲା ।

ସୁଷୀମଙ୍କ ସଙ୍ଗରେ ଅଶୋକଙ୍କର ବୈରଭାବ ଥିବାରୁ ବିନ୍ଦୁସାର ଉଭୟଙ୍କୁ ପୃଥକ୍ ରଖିବା ଆଶୟରେ ଅଶୋକଙ୍କୁ ରାଜ୍ୟର ବାୟବ୍ୟପ୍ରାନ୍ତସ୍ଥିତ ତକ୍ଷଶିଳା ନଗରୀରେ ଘଟିଥିବା ବିଦ୍ରୋହ ଦମନ ନିମିତ୍ତ ସେଠାକୁ ପ୍ରେରଣ କଲେ । ଅଶୋକ ଅଳ୍ପକାଳ ମଧ୍ୟରେ ସୁକୌଶଳରେ ବିଦ୍ରୋହ ଦମନ କରି ପିତାଙ୍କର ଏବଂ ପ୍ରଧାନ ମନ୍ତ୍ରୀଙ୍କର ଅନୁରାଗ ଆକର୍ଷଣ କଲେ । ଇତମଧ୍ୟରେ ସୁଷୀମ ରାଜଧାନୀ ପାଟଳୀପୁତ୍ର ନଗରରେ ନାନାପ୍ରକାର ଉପଦ୍ରବ କରନ୍ତେ; ବିନ୍ଦୁସାର ଅମାତ୍ୟଙ୍କ ପରାମର୍ଶ ଅନୁସାରେ ତାହାଙ୍କୁ ତକ୍ଷଶିଳାର ଶାସନ ନିମିତ୍ତ ସେଠାକୁ ପ୍ରେରଣ କଲେ ଏବଂ ଅଶୋକଙ୍କୁ ରାଜଧାନୀକୁ ଅଣାଇଲେ । କିୟତ୍କାଳପରେ ସୁଷୀମଙ୍କର ଅନୁପସ୍ଥିତ ସମୟରେ ବିନ୍ଦୁସାରଙ୍କର ଚରମକାଳ

ଉପସ୍ଥିତ ହେଲା । ସେ ସୁଷୀମଙ୍କ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଅଶୋକଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ପରଲୋକ ଗମନ କଲେ । ସୁଷୀମ ଅବିଲମ୍ବେ ତକ୍ଷଶିଳାରୁ ସସୈନ୍ୟ ପ୍ରତ୍ୟାବର୍ତ୍ତନ କରି ରାଜ୍ୟାଧିକାର ନିମିତ୍ତ ରାଜଧାନୀ ଆକ୍ରମଣ କଲେ, କିନ୍ତୁ ଅଶୋକ ତାହାଙ୍କର ପ୍ରବୀଣ ମନ୍ତ୍ରୀ ରାଧାଗୁପ୍ତଙ୍କର ସାହାଯ୍ୟରେ ସୁଷୀମଙ୍କୁ ପରାସ୍ତ ଏବଂ ନିହତ କଲେ । ଉକ୍ତ ଅବଦାନଗ୍ରନ୍ଥରେ ଲିଖିତ ଅଛି ଯେ, ଅଶୋକ ଆପଣାର ରାଜତ୍ୱକୁ ଅସପତ୍ନ ଏବଂ ନିଷ୍କଣ୍ଟକ କରିବାର ଉଦ୍ଦେଶ୍ୟରେ ରାଜ୍ୟଲିପ୍ସୁ ସମସ୍ତ ରାଜବଂଶୀୟମାନଙ୍କୁ ବଧ କରିଥିଲେ । ତାହାଙ୍କର ତଦାନୀନ୍ତନ ନୃଶଂସ ପ୍ରକୃତିର ପ୍ରମାଣସ୍ୱରୂପ ଆହୁରି ଗୋଟିଏ କ୍ରୂର ଏବଂ ଭୀଷଣ ହତ୍ୟାକାର୍ଯ୍ୟ ବର୍ଣ୍ଣିତ ଅଛି । ଏକଦା କତିପୟ ଅଙ୍ଗନା ରାଜୋଦ୍ୟାନସ୍ଥ ଗୋଟିଏ ଅଶୋକ-ବୃକ୍ଷର ଶାଖାଗୁଡ଼ିକ ଭାଙ୍ଗିପକାଇଥିବାର ଶୁଣି ସେ ସେହି କାମିନୀମାନଙ୍କୁ ପ୍ରଜ୍ୱଳିତ ଅଗ୍ନିରେ ଦଗ୍ଧ କରିବା ନିମିତ୍ତ ଚଣ୍ଡଗିରିନାମକ ଜଣେ ଆତତାୟୀକୁ ଆଦେଶ ଦେଇଥିଲେ ଏବଂ ସେହି ନିଷ୍ଠୁର ଆଦେଶ କାର୍ଯ୍ୟରେ ପରିଣତ ହୋଇଥିଲା । ଏଥିଉତ୍ତାରେ ସମୁଦ୍ରନାମା ଜଣେ ବୌଦ୍ଧଯତିର ଅସାମାନ୍ୟ ପ୍ରଭାବଦ୍ୱାରା ସେ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇ, ସେହି ଧର୍ମ ଗ୍ରହଣ କରି ନିଜ ଚରିତ୍ରସଂଶୋଧନବ୍ରତରେ ନିରତିଶୟ ରତ ହେଲେ । ଅଶୋକ ବାସ୍ତବରେ ଏପରି ନୃଶଂସଚରିତ୍ର ଥିଲେ କିମ୍ବା ବୌଦ୍ଧଗ୍ରନ୍ଥକାର ବୌଦ୍ଧଧର୍ମର ମାହାତ୍ମ୍ୟ ବୃଦ୍ଧି ନିମନ୍ତେ ଅଶୋକଙ୍କର ପୂର୍ବଚରିତ୍ରକୁ ଏପରି କୁତ୍ସିତ ବର୍ଣ୍ଣରେ ଚିତ୍ରିତ କରିଅଛନ୍ତି, ତାହା ନିର୍ଦ୍ଧାରଣ କରିବାର ଉପାୟ ନାହିଁ । ସମ୍ଭବତଃ ବୌଦ୍ଧ-ଗ୍ରନ୍ଥକାରକଙ୍କର ଚିତ୍ର ଅତିରଞ୍ଜିତ ଅଟେ । ଅନ୍ୟତଃ ତାହାଙ୍କର ବୌଦ୍ଧଧର୍ମ ଗ୍ରହଣ ସମ୍ବନ୍ଧରେ ଅଶୋକ ନିଜେ ସ୍ୱପ୍ରଚାରିତ ଶୈଳଖୋଦିତ ଅନୁଶାସନ-ମାନଙ୍କରେ ଯେଉଁ ବିବରଣ ଦେଇଅଛନ୍ତି ତାହା ଉଲ୍ଲିଖିତ ବିବରଣର ବିରୋଧୀ ଅଟେ । ପ୍ରୋକ୍ତ ଶୈଳଲିପିଦ୍ୱାରା ସେ ପ୍ରଚାର କରି ଯାଇଅଛନ୍ତି ଯେ, ତାଙ୍କ ରାଜତ୍ୱର ପ୍ରଥମ ଭାଗରେ କଳିଙ୍ଗରାଜ୍ୟର ବିଜୟ ନିମିତ୍ତ ସେ ଯେଉଁ ଘୋର ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ, ସେଥିରେ ଅସଂଖ୍ୟ ମନୁଷ୍ୟଙ୍କର ହତ୍ୟାରୂପ ହିଂସାପ୍ରଣୋଦିତ କ୍ରୂର ବ୍ୟାପାର ଏବଂ ଲକ୍ଷ ଲକ୍ଷ ଲୋକଙ୍କର ଅଶେଷବିଧ

ଯନ୍ତ୍ରଣା ଦର୍ଶନ କରି ସେ ହୃଦୟମଧ୍ୟରେ ଗଭୀର ଅନୁତାପ ଓ ନିର୍ବେଦ ଅନୁଭବ କରିଥିଲେ, ଏବଂ ସେହି ସମୟରୁ ଅହିଂସା ପରମଧର୍ମ, ବୌଦ୍ଧଧର୍ମର ଏହି ସ୍ୱର୍ଗୀୟ ନୀତି ପ୍ରତି ଆକୃଷ୍ଟ ହୋଇ କାଳକ୍ରମେ ସେହି ଧର୍ମକୁ ପ୍ରକାଶ୍ୟରୂପେ ଗ୍ରହଣ କରିଥିଲେ ।

ଅଶୋକ ବୌଦ୍ଧଧର୍ମ ଗ୍ରହଣପୂର୍ବକ ଉପଗୁପ୍ତନାମା ଜଣେ ପ୍ରବୀଣ ବୌଦ୍ଧାଚାର୍ଯ୍ୟଙ୍କଠାରୁ ନାନାବିଧ ସଦୁପଦେଶ ଲାଭ କରି ଏକାନ୍ତ ଧର୍ମନିଷ୍ଠ ହେଲେ ଏବଂ ବୌଦ୍ଧଧର୍ମର ଗୌରବ ବର୍ଦ୍ଧନାର୍ଥ ଲକ୍ଷ ଲକ୍ଷ ସ୍ତୂପ ନିର୍ମାଣ ଏବଂ ମଠାଦି ସ୍ଥାପନ କରାଇ ସ୍ୱୀୟ ଅସାଧାରଣ ଧର୍ମାନୁରାଗ ନିମିତ୍ତ ପୂର୍ବତନ ଚଣ୍ଡାଶୋକ ନାମର ପରିବର୍ତ୍ତରେ ଧର୍ମାଶୋକ ନାମରେ ପ୍ରସିଦ୍ଧ ହେଲେ । ତାଙ୍କ ପ୍ରଚାରିତ ଶୈଳଲିପିମାନଙ୍କରେ ସେ ଆପଣାକୁ ପ୍ରିୟଦଶୀ ବା ପ୍ରିୟଦର୍ଶୀ ନାମରେ ଅଭିହିତ କରି ଯାଇଅଛନ୍ତି । କଥିତ ଅଛି ଯେ ଅଶୋକଙ୍କ ଆଜ୍ଞାରେ ୮୪୦୦୦ ସ୍ତୂପ ନିର୍ମିତ ଏବଂ ୮୪୦୦୦ ଅନୁଶାସନ ବା ଧର୍ମାଦେଶ ଖୋଦିତ ହୋଇଥିଲା ।

ଅଶୋକଙ୍କର ପୁତ୍ରମାନଙ୍କ ମଧ୍ୟରେ କୁନାଲ ଓ ମହେନ୍ଦ୍ର ଏବଂ କନ୍ୟାମାନଙ୍କ ମଧ୍ୟରେ ସଙ୍ଘମିତ୍ରା ବୌଦ୍ଧଗ୍ରନ୍ଥମାନଙ୍କରେ ଧର୍ମାନୁରାଗ ନିମିତ୍ତ ବିଶେଷରୂପେ ପ୍ରଶଂସିତ । ମହେନ୍ଦ୍ର ଏବଂ ସଙ୍ଘମିତ୍ରା ରାଜୈଶ୍ୱର୍ଯ୍ୟ ଭୋଗକାମନା ପରିତ୍ୟାଗପୂର୍ବକ ସିଂହଳଦ୍ୱୀପକୁ ଗମନ କରି ତଦ୍ଦେଶୀୟ ରାଜା, ରାଣୀ ଏବଂ ଅନେକ ପ୍ରଜାଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରିଥିଲେ । ବହୁଗୁଣାଧାର ଏକାନ୍ତ ପିତୃଭକ୍ତ କୁନାଲ ପିତାଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ଅଶୋକ ଏକଦା ତକ୍ଷଶିଳାରେ ସଙ୍ଘଟିତ ବିଦ୍ରୋହ ଦମନାର୍ଥ କୁନାଲଙ୍କୁ ସେଠାକୁ ପ୍ରେରଣ କରିଥିଲେ । କୁନାଲ ଦକ୍ଷତା ସହକାରେ ବିଦ୍ରୋହ ଦମନ କରି ବିଦ୍ରୋହଦଳପତି କୁଞ୍ଜରକର୍ଣ୍ଣିକୁ ସ୍ୱାୟତ୍ତ କଲେ । ଇତିମଧ୍ୟରେ ଅଶୋକ ସ୍ୱପ୍ନରେ କୁନାଲଙ୍କ ମୁଖ ବିଶୁଷ୍କ ଓ ବିବର୍ଣ୍ଣ ହୋଇଯାଇଥିବାର ଦେଖି ଏବଂ ଜ୍ୟୋତିଷୀମାନଙ୍କଠାରୁ ସ୍ୱପ୍ନଦ୍ୱାରା କୁନାଲଙ୍କର ପ୍ରାଣହାନି ଅଥବା ଦର୍ଶନଶକ୍ତିର ବିନାଶ ସୂଚିତ ହେଉଅଛି ବୋଲି ଶୁଣି ନିତାନ୍ତ ଦୁର୍ମନାୟମାନ ହୋଇ କିଛିକାଳ ରାଜକାର୍ଯ୍ୟରୁ ବିରତ ହେଲେ । ଏହି ଅବସରରେ କୁନାଲଙ୍କର ଚରିନିଷ୍ଟକାରିଣୀ ତାହାଙ୍କର ବିମାତା

ତିଷ୍ୟରକ୍ଷିତା କୁଟିଳ କୌଶଳଦ୍ୱାରା ମହାରାଜଙ୍କର ମୋହର ହସ୍ତଗତ କରି ଉକ୍ତ ମୋହରଦ୍ୱାରା ଅଙ୍କିତ ଖଣ୍ଡିଏ ଆଦେଶପତ୍ର ଲେଖାଇ ପୂର୍ବୋକ୍ତ କୁଞ୍ଜରକର୍ଣ୍ଣ ନିକଟକୁ ଏହି ଆଜ୍ଞା ପ୍ରେରଣ କଲେ ଯେ, ସେ ପତ୍ର ପ୍ରାପ୍ତିମାତ୍ରକେ କୁନାଲଙ୍କର ନେତ୍ରଦ୍ୱୟ ଉତ୍ପାଟନ କରାଇବ। ଆଦେଶପତ୍ର ଯଥାସ୍ଥାନରେ ଉପସ୍ଥିତ ହେଲା ଏବଂ କୁନାଲ ଏପରି ଆଜ୍ଞା ଆସିଥିବାର ସମ୍ବାଦ ଅବଗତ ହେବାକ୍ଷଣି କିଂକର୍ତ୍ତବ୍ୟବିମୂଢ଼ କୁଞ୍ଜରକର୍ଣ୍ଣ ନିକଟକୁ ଯାଇ ଆଦେଶଲିପି ପାଠ କଲେ ଏବଂ ସେଥିରେ ଅଶୋକଙ୍କର ନାମରେ ମୋହର ଥିବାର ଦେଖି କହିଲେ "କୁଞ୍ଜରକର୍ଣ୍ଣ ! ଏହିକ୍ଷଣି ରାଜାଦେଶ ପାଳନ କର, ନଚେତ୍ ଏହି ଅସିଦ୍ୱାରା ତୁମ୍ଭର ଶିରଶ୍ଛେଦନ କରିବି।" କୁଞ୍ଜରକର୍ଣ୍ଣ ଅଗତ୍ୟା ଜଣେ ଚଣ୍ଡାଳଦ୍ୱାରା ସେହି ନିଷ୍ଠୁର ଆଦେଶକୁ କାର୍ଯ୍ୟରେ ପରିଣତ କରାଇଲେ। ଏଥିଉତ୍ତାରେ ଅନ୍ଧୀଭୂତ କୁନାଲ ଯତିବେଶରେ ଅତି କ୍ଲେଶରେ ବହୁକାଳ ଭ୍ରମଣ କରି ପାଟଳିପୁତ୍ର ନଗରରେ ଉପସ୍ଥିତ ହୋଇ ଅର୍ଦ୍ଧରାତ୍ର ସମୟରେ ରାଜପ୍ରାସାଦର ଅନତିଦୂରରେ ବଂଶୀବାଦନ କରିବାକୁ ଲାଗିଲେ। ଅଶୋକ ସେହି ଅମୃତମୟ ଧ୍ୱନି ଶୁଣି ଦିବ୍ୟାନନ୍ଦରସରେ ଅଭିଷିକ୍ତ ହୋଇ ପ୍ରାତଃକାଳରେ ବାଦକକୁ ଅଣାଇ ଦେଖିଲେ ଯେ ସେ ତାହାଙ୍କର ପ୍ରାଣାଧିକ ତନୟ କୁନାଲ। କୁନାଲକୁ ଅନ୍ଧ ଭିକ୍ଷୁବେଶଧାରୀ ଦେଖି ସେ ଏକାନ୍ତ କ୍ଷୁବ୍ଧ ଓ ବିସ୍ମିତ ହୋଇ କାରଣ ପଚାରିଲେ, କିନ୍ତୁ ସେ କୌଣସି ଉତ୍ତର ଦେଲେ ନାହିଁ। ପରେ ଅନୁସନ୍ଧାନଦ୍ୱାରା ତଥ୍ୟ ବୁଝିପାରି ନୃପତି ମହିଷୀ ତିଷ୍ୟରକ୍ଷିତାର ଶିରଶ୍ଛେଦନ ନିମନ୍ତେ ଉଦ୍ୟତ ହେଲେ, କିନ୍ତୁ କୁନାଲ ଦୟାବତାର ବୁଦ୍ଧଙ୍କର ପବିତ୍ର ନାମ ଉଚ୍ଚାରଣ କରି ପିତାଙ୍କର କୋପ ଶାନ୍ତ କଲେ।

ଅଶୋକଙ୍କର ଏକମାତ୍ର ସହୋଦର ବୀତଶୋକ ଏକସମୟରେ କତିପୟ ବୌଦ୍ଧଧର୍ମଦ୍ୱେଷୀ ବ୍ରାହ୍ମଣମାନଙ୍କ ପ୍ରରୋଚନାରେ ଭ୍ରାତୃବିରୋଧୀ ହୋଇଥିଲେ, କିନ୍ତୁ ପରେ ଅଗ୍ରଜଙ୍କ ଧର୍ମଗୁରୁ ଉପଗୁପ୍ତଙ୍କ ନିକଟରେ ଶରଣାପନ୍ନ ହୋଇ ବୌଦ୍ଧଧର୍ମର ଦୀକ୍ଷା ଗ୍ରହଣପୂର୍ବକ ସନ୍ନ୍ୟାସ ଅବଲମ୍ବନ କଲେ।

କତିପୟ ଇଉରୋପୀୟ ପ୍ରାଚ୍ୟପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନେ ଅସାମାନ୍ୟ

ଅଧ୍ୟବସାୟ ସହକାରେ ଅଶୋକଙ୍କର ଅନୁଶାସନଗୁଡ଼ିକ ପାଠ କରି ପ୍ରକାଶ କରିଅଛନ୍ତି । ସେହି ଲିପିଗୁଡ଼ିକମଧ୍ୟରୁ କେତେକ ଖଣ୍ଡଶୈଳ କଳେବରରେ, କେତେକ ଗୁମ୍ଫାମାନଙ୍କରେ ଏବଂ କେତେକ ସମୁଚ୍ଚ ସ୍ତମ୍ଭମାନଙ୍କରେ ଖୋଦିତ ହୋଇଥିବାର ଦେଖାଯାଏ । ଶୈଳାଙ୍କିତ ଘୋଷଣାଗୁଡ଼ିକ ତାହାଙ୍କର ରାଜତ୍ୱର ତ୍ରୟୋଦଶ ଏବଂ ଚତୁର୍ଦ୍ଦଶ ବର୍ଷ ମଧ୍ୟରେ ଏବଂ ସ୍ତମ୍ଭଲିଖିତ ଘୋଷଣାଗୁଡ଼ିକ ସପ୍ତବିଂଶ ଓ ଅଷ୍ଟବିଂଶ ବର୍ଷ ମଧ୍ୟରେ ଖୋଦିତ ହୋଇଥିଲା । ଅଶୋକ ସପ୍ତତ୍ରିଂଶଦ୍ବର୍ଷ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୨୬୯ ଅବ୍ଦରୁ ୨୩୨ ଅବ୍ଦ ପର୍ଯ୍ୟନ୍ତ ସାମ୍ରାଜ୍ୟ-ଲକ୍ଷ୍ମୀ ସମ୍ଭୋଗ କରି ଅବଶେଷରେ ଧର୍ମପ୍ରଚାରାର୍ଥ ସସାଗରାଧରା ବୌଦ୍ଧସଙ୍ଘଙ୍କୁ ଦାନ କରି ଏବଂ ନିଜେ ଭିକ୍ଷୁବ୍ରତ ଗ୍ରହଣ କରି ନଶ୍ୱର ଦେହ ପରିତ୍ୟାଗ କରିଥିଲେ ।

ଭାରତର ବିଭିନ୍ନ ଅଂଶରେ ପାଞ୍ଚଗୋଟି ଶୈଳଦେହରେ ଶୈଳଲିଖିତ ଅନୁଶାସନଗୁଡ଼ିକ ବର୍ତ୍ତମାନ ଅଛି । ପ୍ରଥମଟି ଭୁବନେଶ୍ୱରର ଅଦୂରବର୍ତ୍ତୀ ଦୟାନଦୀ ତୀରସ୍ଥ ଧଉଳଗିରି, ଦ୍ୱିତୀୟଟି ଗଞ୍ଜାମଜିଲ୍ଲାସ୍ଥିତ ଯୌଗଡ଼ା ପର୍ବତ, ତୃତୀୟଟି ଗୁଜରାଟସ୍ଥିତ ଗିର୍ଣ୍ଣାର ପର୍ବତ, ଚତୁର୍ଥଟି ଯମୁନା ତଟସ୍ଥ ହିମାଳୟ ମଧ୍ୟବର୍ତ୍ତୀ ଖାଲସିଗିରି ଏବଂ ପଞ୍ଚମଟି ସିନ୍ଧୁନଦୀ ତୀରବର୍ତ୍ତୀ ଅଟକନଗର ନିକଟସ୍ଥ କପର୍ଦ୍ଦିଗିରି । ପ୍ରତ୍ୟେକ ଶୈଳରେ ଚତୁର୍ଦ୍ଦଶଗୋଟି ଅନୁଶାସନ ଲିପିବଦ୍ଧ ହୋଇଅଛି । ପ୍ରଥମ ଅନୁଶାସନରେ ଜୀବବଧ ନିଷେଧ ; ଦ୍ୱିତୀୟରେ ରୁଗ୍ଣ ମନୁଷ୍ୟ ଓ ପଶୁମାନଙ୍କ ଚିକିତ୍ସା ଓ ସେବା ନିମିତ୍ତ ଆୟୋଜନ ; ତୃତୀୟରେ ବୌଦ୍ଧଧର୍ମର ମାହାତ୍ମ୍ୟ କୀର୍ତ୍ତନ ନିମିତ୍ତ ପ୍ରତି ପଞ୍ଚମବର୍ଷରେ ମହୋତ୍ସବର ଅନୁଷ୍ଠାନବିଧି ; ଚତୁର୍ଥରେ ନିଜର ପୁତ୍ର ଓ ପୌତ୍ର ଏବଂ ବଂଶଧରମାନଙ୍କ ପ୍ରତି ଧର୍ମରକ୍ଷା ଏବଂ ଧର୍ମପ୍ରଚାର ନିମିତ୍ତ ଉପଦେଶ ; ପଞ୍ଚମରେ ଧନିଦରିଦ୍ର ନିର୍ବିଶେଷରେ ସକଳ ସମ୍ପ୍ରଦାୟ ମଧ୍ୟରେ ସ୍ୱଦେଶରେ ଏବଂ ବିଦେଶରେ ଧର୍ମପ୍ରଚାର ନିମିତ୍ତ ଧର୍ମମହାମାତ୍ର ବା ପରିବ୍ରାଜକ ଧର୍ମାଚାର୍ଯ୍ୟମାନଙ୍କର ନିଯୁକ୍ତି ; ଷଷ୍ଠରେ ପ୍ରଜାଙ୍କଠାରେ ରାଜା ଋଣୀ ଏହି ଉଚ୍ଚଭାବ ଉପଲବ୍ଧି କରି ପ୍ରଜାଙ୍କର ଦୁଃଖହ୍ରାସ ଓ ସୁଖବୃଦ୍ଧି ନିମିତ୍ତ ଆପଣାର ସମଗ୍ର ଜୀବନକୁ ସର୍ବଦା ବିନିଯୋଗ କରିବାର ପବିତ୍ର ସଂକଳ୍ପ ; ସପ୍ତମରେ ସଂକୀର୍ଣ୍ଣ ସାମ୍ପ୍ରଦାୟିକ

ବିଦ୍ୱେଷ ପରିବର୍ଜନପୂର୍ବକ ସାର୍ବଜନୀନ ମୈତ୍ରୀବ୍ରତ ସାଧନର ଅଭିପ୍ରାୟ ; ଅଷ୍ଟମରେ ମୃଗୟାଦି ରାଜବ୍ୟସନର ଅନୌଚିତ୍ୟ ପ୍ରଦର୍ଶନ ଏବଂ ଦାନ, ସେବା ଓ ସତ୍ପ୍ରସଙ୍ଗର ପ୍ରଶଂସା ; ନବମରେ ସକଳପ୍ରକାର ଦାନ ମଧ୍ୟରେ ଧର୍ମଦାନର ଅର୍ଥାତ୍ ଧର୍ମନୀତି ବିସ୍ତାର ନିମିତ୍ତ ଆନ୍ତରିକ ଯତ୍ନର ଶ୍ରେଷ୍ଠତା ପ୍ରଖ୍ୟାପନ ; ଦଶମରେ ପ୍ରଜାମାନଙ୍କ ସଧର୍ମାନୁରାଗ ଦର୍ଶନରେ ଆନନ୍ଦ ପ୍ରକାଶ ; ଏକାଦଶରେ ଭକ୍ତି ପ୍ରୀତି ମୈତ୍ରୀଭାବର ସାଧନକୁ ପରମ ପୁରୁଷାର୍ଥ ବୋଲି ଉତ୍ପାଦନ ; ଦ୍ୱାଦଶରେ ସମ୍ପ୍ରଦାୟ ନିର୍ବିଶେଷରେ ଗୃହତ୍ୟାଗୀ ସନ୍ନ୍ୟାସୀ ଏବଂ ଗୃହସ୍ଥ ଉଭୟ ଶ୍ରେଣୀର ଲୋକମାନଙ୍କ ପ୍ରତି ଶ୍ରଦ୍ଧା ସମର୍ପଣ ଏବଂ ବିଭିନ୍ନ ସମ୍ପ୍ରଦାୟମାନଙ୍କର ପରସ୍ପର ନିକାର ଅଯୌକ୍ତିକତା ପ୍ରଦର୍ଶନ ; ତ୍ରୟୋଦଶରେ କଳିଙ୍ଗଯୁଦ୍ଧର ନୃଶଂସତା ବର୍ଣ୍ଣନ, ନିଜର ଅନୁତାପ ଏବଂ ନିବ ଦୀକ୍ଷାଗ୍ରହଣର ଉଲ୍ଲେଖ, ଭାରତର ଦକ୍ଷିଣାଞ୍ଚଳରେ, ଚୋଳ, ପାଣ୍ଡ୍ୟ ପ୍ରଭୃତି ପ୍ରଦେଶରେ ଏବଂ ଆଣ୍ଟିଓକସ୍ ପ୍ରଭୃତି ଯବନ ଭୂପତିମାନଙ୍କ ରାଜ୍ୟରେ ବୌଦ୍ଧଧର୍ମ ପ୍ରଚାରର ସୁଫଳ ଦର୍ଶନରେ ମହୋଲ୍ଲାସ ପ୍ରକାଶ ; ଚତୁର୍ଦ୍ଦଶରେ ନିଜ ସାମ୍ରାଜ୍ୟର ବିପୁଳ ବିସ୍ତୃତିର ଏବଂ ଭବିଷ୍ୟତରେ ଧର୍ମପ୍ରଚାରାର୍ଥ ଦୃଢ଼ତର ସଂକଳ୍ପର ଉଲ୍ଲେଖ ଲିପିବଦ୍ଧ ହୋଇଅଛି ।

ଗୁମ୍ଫାମାନଙ୍କରେ ଖୋଦିତ ଲିପି ଗୟା ନିକଟସ୍ଥ ନାଗାର୍ଜୁନ ପର୍ବତରେ, ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରିରେ, ମଧ୍ୟପ୍ରଦେଶସ୍ଥ ରାମଗଡ଼ରେ ଏବଂ ଅନ୍ୟାନ୍ୟ କେତେକ ସ୍ଥଳରେ ଦେଖାଯାଏ । କେଉଁ ଗୁମ୍ଫା କେଉଁ ରାଜା ବୌଦ୍ଧତପସ୍ୱୀମାନଙ୍କ ଉପକାରାର୍ଥ ନିର୍ମାଣ କରାଇଥିଲେ ସେଥିର ବିବରଣ ସେହି ଗୁମ୍ଫାମାନଙ୍କରେ ଖୋଦିତ ହୋଇଅଛି ।

ସ୍ତମ୍ଭଖୋଦିତ ଲିପି ଦିଲ୍ଲୀରେ, ଏଲାହାବାଦରେ, ଚମ୍ପାରଣ ଜିଲ୍ଲାର ଗ୍ରାମବିଶେଷରେ ଏବଂ ଭୂପାଳସ୍ଥିତ ସାଞ୍ଚୀ ନାମକ ସ୍ଥାନରେ ପରିଦୃଷ୍ଟ ହୁଏ । ପୂର୍ବୋଲ୍ଲିଖିତ ଚତୁର୍ଦ୍ଦଶ ଅନୁଶାସନବତ୍ ସ୍ତମ୍ଭାନୁଶାସନଗୁଡ଼ିକ ମଧ୍ୟ ନାନା ଧର୍ମୋପଦେଶରେ ଏବଂ ଅଶୋକଙ୍କର ଅନୁଷ୍ଠିତ ପ୍ରଜାହିତକର କାର୍ଯ୍ୟର ବିବରଣରେ ପରିପୂର୍ଣ୍ଣ ।

ଏହି ଅନୁଶାସନଙ୍କପି କଥା ଚିନ୍ତା କଲେ କାହାର ହୃଦୟ ବିସ୍ମୟାପନ୍ନ ନ ହେବ ? କି ଗଭୀର ଧର୍ମାନୁରାଗ ! ଧର୍ମପ୍ରଚାରାର୍ଥ କି ଅତୁଲ୍ୟ ବ୍ୟାକୁଳତା ! କେବଳ ମନୁଷ୍ୟମାନଙ୍କ ପ୍ରତି ନୁହେ, ନିକୃଷ୍ଟ ଜୀବମାନଙ୍କ ପ୍ରତି ସୁଦ୍ଧା କି ଅନୁପମ ଦୟା ! କି ସ୍ୱର୍ଗୀୟ ଅସାମ୍ପ୍ରଦାୟିକ ଉଦାରତା ! କି ଅମୃତମୟ ପ୍ରଜାବାତ୍ସଲ୍ୟ ଓ ଅମାୟିକ ଲୋକହିତୈଷଣା ! ଧନ୍ୟ ଅଶୋକ ! ଧନ୍ୟ ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ! ଧନ୍ୟ ତୁମ୍ଭର ଦୟା ! ଧନ୍ୟ ତୁମ୍ଭର ବିଶ୍ୱାସ !

## ପ୍ରଶ୍ନ

୧ । ଦେବୋପମ, ଲୋକୋତ୍ତର, ହିଂସାପ୍ରଣୋଦିତ, ପିତୃଗୌରବ-ବର୍ଦ୍ଧନ, କଦାକାର, ନୃଶଂସଚରିତ୍ର, ଧର୍ମନିଷ୍ଠ, କିଂକର୍ତ୍ତବ୍ୟବିମୂଢ଼, ଧନଦରିଦ୍ରନିର୍ବିଶେଷରେ, ଏହି ସମସ୍ତ ପଦମାନଙ୍କର ବ୍ୟାସବାକ୍ୟ ଲେଖ ।

୨ । ଅମାୟିକ ଲୋକହିତୈଷଣା, ସାର୍ବଜନୀନ ମୈତ୍ରୀବ୍ରତ, ଅସାମ୍ପ୍ର-ଦାୟିକ ଉଦାରତା, ରାଜବ୍ୟସନୀ ସାମ୍ରାଜ୍ୟଲକ୍ଷ୍ମୀ, ପୁଣ୍ୟଶ୍ଳୋକ, ଲୋକହିତକର, ଜୀବନର ଶୁଭ୍ରାଲୋକ, ଏଗୁଡ଼ିକର ଅର୍ଥ ବ୍ୟାଖ୍ୟା କର ।

୩ । ଅଶୋକ ଉତ୍କଳକୁ ଆସିଥିଲେ ବୋଲି ଅନୁମାନ କରିବାର କି ହେତୁ ଅଛି ?

୪ । ସଂକ୍ଷେପରେ କୁନାଲ ଚରିତ ଲେଖ ।

୫ । ନିମ୍ନଲିଖିତ ଶବ୍ଦଗୁଡ଼ିକର ବିପରୀତାର୍ଥବୋଧକ ଶବ୍ଦ ଲେଖ :—
ବାତ୍ସଲ୍ୟ, ଅନୁରାଗ, ନିନ୍ଦା, ପ୍ରାଚ୍ୟ, ନିକୃଷ୍ଟ, ଗୌରବ, ଅଗ୍ରଜ, କନିୟାନ୍, ଆଲୋକ, ପୁଣ୍ୟ ।

୬ । ଚରିତ ଓ ଚରିତ୍ରର ପ୍ରଭେଦ କଣ ?

୭ । ଅହିଂସା ପରମ ଧର୍ମ, ଏ ବିଷୟରେ ଗୋଟିଏ କ୍ଷୁଦ୍ର ପ୍ରବନ୍ଧ ଲେଖ ।

# ଆକାଶ ପ୍ରତି

୧

ଅନନ୍ତ ଅପାର ତୁହି ରେ ମହା ଆକାଶ !
ପୃଥିବୀର କୀଟ ମୁହିଁ କ୍ଷୁଦ୍ରବୁଦ୍ଧି ନର ।
କି ମହାନ କି ଗମ୍ଭୀର ତୋହର ପ୍ରକାଶ !
ଭାବିଲେ ସ୍ତବଧ ଚିତ୍ତ ହୁଅଇ ମୋହର ।

୨

ନ ଥିଲା ରେ ଯେତେବେଳେ ବିଶ୍ୱ ଭୁବନ,
ନ ଥିଲା ଏ ସୂର୍ଯ୍ୟ-ଚନ୍ଦ୍ର-ଗ୍ରହ-ତାରାବଳୀ ।
ନ ଥିଲା ଧରଣୀ ଏହି ଭୂତ-ନିକେତନ,
ଅନନ୍ତ ଅନ୍ଧାରେ ପୂର୍ଣ୍ଣ ଥିଲା ସର୍ବସ୍ଥଳୀ ।

୩

ଅନନ୍ତ ନିବିଡ଼ ଘୋର ଅନ୍ଧକାରମୟ
ଥିଲା ବର୍ଣ୍ଣ ରୂପ-ରେଖା ଶୂନ୍ୟ ନିରାକାର !
ନିସ୍ତରଙ୍ଗ ଥିଲା ଯେବେ ଅନନ୍ତ ସମୟ,
ଘଟଣା-ବିହୀନ-ଘୋର-କାଳ-ପାରାବାର ।

୪

ନ ଥିଲା ଯେ କାଳେ ସୃଷ୍ଟି-ଲୀଳା ଜଗତର,
କେବଳ ଜାଗ୍ରତ ଥିଲେ ଅନାଦିକାରଣ ।
ଦେଶକାଳାତୀତ ବାକ୍ୟ-ମନ-ଅଗୋଚର,
ଅନନ୍ତ ଚୈତନ୍ୟମୟ ବ୍ରହ୍ମ ସନାତନ ।

୫

ସେ କାଳରେ ଅବଲମ୍ବି ଅନାଦିକାରଣେ
ଅସୀମ ଆକାଶ ! ତୁହି ମହା ମହିମାରେ

(ସେ ମହିମା, ସ୍ତବ୍ଧତତ୍ତ୍ୱ ଯାହାର ଚରଣେ)
ବିରାଜିତ ଥିଲୁ ବେଢ଼ି ଅନନ୍ତ ଅନ୍ଧାରେ ।

୬

ସହସା ପ୍ରଥମ ଊର୍ମି ମହାକାଳ-ନୀରେ,
ଖେଳିଲା ଅନନ୍ତ ମହା ମହେଶ ଆଦେଶେ ।
ସହସା ପ୍ରକାଶେ ଜ୍ୟୋତି-ଧାରା ତୋ ଶରୀରେ,
ଶୁଭ୍ର ମନ୍ଦାକିନୀ ଯଥା ବ୍ୟୋମକେଶ-କେଶେ ।

୭

ସାକ୍ଷୀ ତୁହି ରେ ଗଗନ ! ସୃଷ୍ଟିପ୍ରକ୍ରିୟାରି,
ଦେଖିଲୁ କେମନ୍ତେ ଜ୍ୟୋତି ଭେଦି ତମୋରାଶି,
ପ୍ରକାଶିଲା କୋଟି କୋଟି ସୁନ୍ଦର ସଂସାର
ସୂର୍ଯ୍ୟ-ଚନ୍ଦ୍ର-ଗ୍ରହ-ତାରା ତୋ ଦେହେ ବିନ୍ୟାସି ।

୮

ପୃଥିବୀ-ଜନମ ତୁହି ଦେଖିଲୁ ଗଗନ !
ଜଳ ସ୍ଥଳ-ଅଗ୍ନି-ବାୟୁ-ସଂଗ୍ରାମ ଭୈରବ ।
ଦେଖିଲୁ ହିମାଦ୍ରିଆଦି ଗିରି ଉନ୍ମଜ୍ଜନ,
ଅଚଳଶିଖରୁଁ ନଦ ନଦୀର ଉଦ୍ଭବ ।

୯

ପୃଥ୍ୱୀର ପ୍ରଥମ ହାସ୍ୟ ତୋହରି ଗୋଚର,
ପ୍ରଥମ ଜୀବର ସୃଷ୍ଟି ତୋର ସନ୍ନିଧାନେ,
ସୃଷ୍ଟ ଆଦି-ନର-ନାରୀ ଅଗ୍ରତେ ତୋହର
ସର୍ବଦର୍ଶୀ ଅଟୁ ତୁହି ବିଶ୍ୱର ବିଧାନେ ।

୧୦

ଅତୀତର ଇତିହାସ କେ ଜାଣେ ତୋ ପରି,
ସୁଖଦୁଃଖମୟ ଯେତେ ଘଟନାନିଚୟ,

ଘଟିଛି ଜଗତେ, ସବୁ ବଦିତ ତୋହର
ତୋ ଅଗ୍ରତେ ରାଜ୍ୟ-ନାଶ, ରାଜ୍ୟ-ଅଭ୍ୟୁଦୟ ।

୧୧

ବଳିଷ୍ଠର ଅତ୍ୟାଚାର, ଦୁର୍ବଳ-ଦୁର୍ଗତି,
ସ୍ୱାର୍ଥ ଦ୍ୱେଷ ଲୋଭାଦର କ୍ରୂର ପ୍ରବଞ୍ଚନା
ଦେଖିଛୁ ସକଳ, ବ୍ୟୋମ ! ଗମ୍ଭୀରମୂରତି
ତୋ ପରି ବୁଝିବ କିଏ ପୃଥିବୀ ବେଦନା ?

୧୨

ଆଦି ସୃଷ୍ଟିକାଳୁଁ ଅବଗାହି ଜ୍ୟୋତି ଜଳେ
କି ସୁନ୍ଦର କି ଉଦାର ଦେହ-ଶ୍ରୀ ତୋହର ।
କହ ବ୍ୟୋମ ! କିଏ ଅଛୁ ଏ ବିଶ୍ୱ ମଣ୍ଡଳେ
ତୋ ରୂପେ ନୁହଇ ମୁଗ୍ଧ ଯାହାର ଅନ୍ତର ?

୧୩

ସକଳ ସୌନ୍ଦର୍ଯ୍ୟ ଲୀଳା ତୋହର ଉରସ୍ଥଳେ,
ନିତ୍ୟଲୀଳାଭୂମି ତୁହି କବିତା-ଦେବୀର,
ନାଚଇ ଅଗଣ୍ୟ ବିଶ୍ୱ ନିତ୍ୟଲୀଳାରଙ୍ଗେ
ତୋହ୍ମା ମହା ସୁନୀଳ ବକ୍ଷେ ଶାସନେ ବିଧିର ।

୧୪

କେତେ ବେଶ ଧର ବ୍ୟୋମ  ହୋଉ ପ୍ରକାଶିତ
କେତେବେଳେ ଦିଗମ୍ବର ତୁହି ନୀଳାମ୍ବର
ନକ୍ଷତ୍ର ଶଶାଙ୍କେ କେବେ ତୋ ଦେହ ଭୂଷିତ
କେବେ ମେଘ ଆଡ଼ମ୍ବରେ ଦିଶୁ ଭୟଙ୍କର ।

୧୫

ସୁହାସିନୀ ଉଷାଦେବୀ ଆଲୋକନନ୍ଦିନୀ
ବନ୍ଦେ ଭକ୍ତିଭରେ ଯେବେ ତୋର ପଦତଳେ

ସହସା ହସଇ ଜାଗି ଉଲ୍ଲାସେ ମେଦନୀ
ଲାବଣ୍ୟ-ଲହରୀ ଉଚ୍ଛୁଳଇ ଜଳେ ସ୍ଥଳେ ।

୧୬

ସହସା କଟାକ୍ଷେ ତୋର ରବ ଜ୍ୟୋତିର୍ମୟ
ରଞ୍ଜଇ ଧରଣୀ ମୁଖ କନକ-କିରଣେ,
ସହସା ଫୁଟଇ ଫୁଲ ବହଇ ମଳୟ
ବହଙ୍ଗ ସଙ୍ଗୀତ ଗାଏ ସୁମଧୁର ସ୍ୱନେ ।

୧୭

ରଞ୍ଜିତ ଜଳଦ-ମଞ୍ଚୁ ଯେବେ ଅବଚୟ,
ବୁଡ଼ଇ ପଶ୍ଚିମେ ଭାନୁ କୋଳରେ ତୋହର,
ଧୀରେ ଧୀରେ ଅନ୍ଧକାର ଚୌଦିଗ ଆବର,
ମଣ୍ଡଇ ନକ୍ଷତ୍ରମାଳେ ତୋର କଳେବର ।

୧୮

କି ଗମ୍ଭୀର କି ପ୍ରଶାନ୍ତ ଭାବ ଶବରୀରେ
ଜାଗଇ ଭାବୁକମନେ ତୋର ଦରଶନେ ।
କି ମହା ନୀରବ ବେଦ ପ୍ରତ୍ୟୁ ଗମ୍ଭୀରେ
ଶୁଣଇ ନୀରବ ବଣ୍ଡ ଭସ୍ତୃସ୍ତବ୍ଧମନେ ।

୧୯

କୌମୁଦୀ ଚର୍ଚ୍ଚିତ ତୋର ନୀଳ କଳେବର
ପ୍ରଶାନ୍ତ ପବିତ୍ର ମୂର୍ତ୍ତି ଭୁବନ-ମୋହନ
ନମେଷେ କରଇ ଆହା ଜୁଡ଼ସିତେ ସୁନ୍ଦର,
ଦର୍ଶନେ ପବିତ୍ର କରେ କଳୁଷିତ ମନ ।

୨୦

ଗମ୍ଭୀର ନଶୀଥକାଳେ ନଦ୍ରିତା ଧରଣୀ
ସ୍ୱପନେ ତୋ ମହାମୂର୍ତ୍ତି କରେ ଦରଶନ ।

ହସଇ ନୀରବେ ତେଣୁ ମହାନନ୍ଦେ ଧନୀ,
ସୁପ୍ତ ଶିଶୁ ଦେଖି ଯେସନେ ସ୍ୱର୍ଗୀୟ ସ୍ୱପନେ ।

୨୧

ଧନ୍ୟ ଧନ୍ୟ ରେ ଆକାଶ ! ଧନ୍ୟ ତୋ ମହିମା
ମହାଭାବ ଉପୁଜଇ ତୋର ଦରଶନେ ।
ଉଦାର ପ୍ରଶାନ୍ତ ତୋର ଅନନ୍ତ ନୀଳିମା,
ସଂସାରର କ୍ଷୁଦ୍ର ଭାବ ବିନାଶଇ କ୍ଷଣେ ।

୨୨

ମୁହୂର୍ତ୍ତକେ ଯେବେ ମୋତେ ରେ ମହାଗଗନ !
ପରମାତ୍ମା ପ୍ରାଣସଖା ମହେଶ ଶ୍ରୀପଦେ ।
ମହା ପ୍ରେମାବେଶେ ଅଶ୍ରୁ ବର୍ଷେ ମୋ ନୟନ
ଲଭଇ ମୁଁ ସ୍ୱରଗର ଆନନ୍ଦ ସମ୍ପଦେ ।

ପ୍ରଶ୍ନ

୧ । ଭୂତନକେତନ, ରୂପ-ରେଖାଶୂନ୍ୟ, ଘଟନା-ବହ୍ନିଳ-ଘୋର-କାଳି-ପାରାବାର, ଦେଶ-କାଳାତୀତ, ଏହି ପଦମାନଙ୍କର ସମାସ ଓ ଅର୍ଥ ବିବୃତ କର ।

୨ । ସପ୍ତମ ଓ ଅଷ୍ଟମ ଶ୍ଳୋକର ବ୍ୟାଖ୍ୟା ଲେଖ ।

୩ । ଆକାଶର ଅସୀମ ବିସ୍ତାର ଓ ସେଥିରେ ପ୍ରକାଶିତ ଅଗଣ୍ୟ ଦୃଶ୍ୟର ଦର୍ଶନ କଲେ ମନରେ କେଉଁ କେଉଁ ଭାବ ଉଦିତ ହୁଏ ?

୪ । କି ମହା ନୀରବ ବେଦ ପ୍ରକୃତି ଗମ୍ଭୀରେ, ଏହାର ବ୍ୟାଖ୍ୟା କର ।

୫ । ଏକାଦଶ ଓ ଊନବିଂଶ ଶ୍ଳୋକକୁ ଗଦ୍ୟରେ ପରିଣତ କରି ତାହାର ଭାବ ନିଜ ଭାଷାରେ ପ୍ରକାଶ କର ।

୬ । ଏହି କବିତାରେ ଥିବା ଉଷା ଓ ସନ୍ଧ୍ୟାର ବର୍ଣ୍ଣନା ଆବୃତ୍ତି କର ।

# କୁମାରୀ ତରୁ ଦତ୍ତ

ମନୁଷ୍ୟସମାଜର ଅର୍ଦ୍ଧାଙ୍ଗ ପୁରୁଷ ଓ ଅର୍ଦ୍ଧାଙ୍ଗ ନାରୀ । ସମାଜର ଉନ୍ନତି ସାଧନ ନିମିତ୍ତ ନର ନାରୀ ଉଭୟଙ୍କର ସମବେତ ଯତ୍ନ ଏକାନ୍ତ ଆବଶ୍ୟକ । ପୁରୁଷର ବୀର୍ଯ୍ୟ, ବୁଦ୍ଧି ଓ ପ୍ରୀତିର ବିକାଶ ନିମିତ୍ତ ଶିକ୍ଷା ଯେପରି ପ୍ରୟୋଜନୀୟ, ନାରୀପ୍ରକୃତିର ବିକାଶ ନିମିତ୍ତ ଶିକ୍ଷା ସେହିପରି ଆବଶ୍ୟକ । କନ୍ୟାକୁ ଅତି ଯତ୍ନରେ ଶିକ୍ଷା ଦେବ, ଏହି ଉପଦେଶ ପ୍ରାଚୀନକାଳର ଋଷିମାନେ ଦେଇ-ଯାଇଅଛନ୍ତି, କିନ୍ତୁ ଘୋର କୁସଂସ୍କାରର ପ୍ରଭାବରୁ ଆମ୍ଭମାନଙ୍କ ଦେଶରେ ନାରୀ-ଶିକ୍ଷା ଅବହେଳିତ ହୋଇଥିବାରୁ ସ୍ତ୍ରୀ-ଜାତି ଜ୍ଞାନାଲୋକ-ଲାଭରୁ ବଞ୍ଚିତ ହୋଇ ଅନୁନ୍ନତ ଅବସ୍ଥାରେ ଜୀବନଯାପନ କରୁଥିବାର ଦେଖାଯାଏ । ବ୍ରିଟିଶ ଶାସନରେ ଏହି ଦେଶରେ ନବ ଶୁଭଯୁଗ ଆବର୍ତ୍ତିତ ହୋଇଅଛି ଏବଂ ଯେପରି ପୁରୁଷ ନିମିତ୍ତ, ସେହିପରି ସ୍ତ୍ରୀମାନଙ୍କ ପାଇଁ ଜ୍ଞାନୋପାର୍ଜ୍ଜନର ପଥ ପରିଷ୍କୃତ ହୋଇଅଛି । ଏହି ନବଯୁଗରେ ଅନେକଗୁଡ଼ିଏ ଭାରତୀୟ ନାରୀ ସୁଶିକ୍ଷିତା ହୋଇ ନାରୀନାମର ସମ୍ମାନ ବଢ଼ାଇଅଛନ୍ତି ଏବଂ ନାରୀ ଯେ ସକଳପ୍ରକାର ବିଦ୍ୟା ଅନୁଶୀଳନ କରିବା ପାଇଁ ଉପଯୁକ୍ତା, ତାହା କାର୍ଯ୍ୟତଃ ପ୍ରମାଣ କରି-ଦେଇଅଛନ୍ତି । ଅତ୍ୟଳ୍ପ ବୟସରେ ପରଲୋକାନ୍ତରିତା କୁମାରୀ ତରୁ ଦତ୍ତଙ୍କର ଜୀବନ ଏ ବିଷୟରେ ଗୋଟିଏ ଉତ୍କୃଷ୍ଟ ଦୃଷ୍ଟାନ୍ତ ।

ଓଡ଼ିଶାର ଭୂତପୂର୍ବ କମିଶନର ଶ୍ରୀ ରମେଶଚନ୍ଦ୍ର ଦତ୍ତ କଲିକତା ନଗରୀର ଯେଉଁ ପ୍ରସିଦ୍ଧ ଦତ୍ତବଂଶରେ ଜନ୍ମଗ୍ରହଣ କରିଥିଲେ, କୁମାରୀ ତରୁ ମଧ୍ୟ ସେହି ଦତ୍ତବଂଶକୁ ଅଲଙ୍କୃତ କରିଥିଲେ । ଏହି ପ୍ରତିଭାଶାଳିନୀ କୁମାରୀ ପ୍ରଥମେ ତାଙ୍କ ପିତା ଶ୍ରୀ ଗୋବିନ୍ଦଚନ୍ଦ୍ର ଦତ୍ତଙ୍କ ଯତ୍ନରେ ନିଜ ଗୃହରେ ବିଦ୍ୟାଶିକ୍ଷା କରିଥିଲେ, ପରେ ପିତାଙ୍କ ସଙ୍ଗରେ ଇଉରୋପ ଗମନ କରି ଫ୍ରାନ୍ସଦେଶରେ ଫରାସୀ ସାହିତ୍ୟ ଅଧ୍ୟୟନ କରି ଇଂଲଣ୍ଡରେ କିଛିକାଳ ବାସ କରିଥିଲେ । ସେ ୧୮୫୬ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ୧୮୭୭ ଖ୍ରୀଷ୍ଟାବ୍ଦରେ ଏକୋଇଶ ବର୍ଷ ବୟସରେ ଜୀବଲୀଳା ସମ୍ବରଣ କଲେ । ଏହି ଅଳ୍ପକାଳମଧ୍ୟରେ ସେ ଉଚ୍ଚ

ଶ୍ରେଣୀର ଶିକ୍ଷାଲାଭ କରି ସୁକବି ଓ ସୁଲେଖିକା ବୋଲି ସ୍ୱଦେଶରେ ଏବଂ ବିଦେଶରେ ଯେଉଁ ସମ୍ମାନ ଓ ଯଶ ଲାଭ କରିଅଛନ୍ତି, ତଦ୍ଦ୍ୱାରା ଏ ଦେଶର ନାରୀକୁଳ ଗୌରବାନ୍ୱିତ ହୋଇଅଛନ୍ତି ।

କେହି କେହି ମନେ କରନ୍ତି ଯେ ସ୍କୁଲ କଲେଜରେ ଅଧ୍ୟୟନ ନ କଲେ ବିଦ୍ୟାଶିକ୍ଷା ହୁଏ ନାହିଁ, କିନ୍ତୁ ଇଚ୍ଛା ଓ ଯତ୍ନ ଥିଲେ ଘରେ ବସି ସୁଦ୍ଧା ଲେଖାପଢ଼ା କଲେ ଯେ ପ୍ରଗାଢ଼ ପାଣ୍ଡିତ୍ୟ ଲାଭ କରାଯାଇପାରେ ଏହା ତରୁଙ୍କର ଜୀବନରେ ସୁପ୍ରମାଣିତ । ପୁଣି ପିତା, ମାତା, ପତି ବା ଭ୍ରାତାଙ୍କ ଯତ୍ନରେ ବୁଦ୍ଧିମତୀ ନାରୀ ଯେ ଜ୍ଞାନର ଉଚ୍ଚ ରାଜ୍ୟରେ ବିଚରଣ କରି କାବ୍ୟ, ଇତିହାସ, ବିଜ୍ଞାନ, ଦର୍ଶନ, ଧର୍ମଶାସ୍ତ୍ର ପ୍ରଭୃତି ସକଳପ୍ରକାର ବିଦ୍ୟା ଆଲୋଚନା କରି ପାରନ୍ତି, ଏ ବିଷୟରେ ମଧ୍ୟ ସେହି ବାଳିକାର ଜୀବନ ସାକ୍ଷୀ ଅଟେ ।

ଯେତେବେଳେ ତରୁ ପିତାଙ୍କ ସଙ୍ଗରେ ଇଉରୋପ ଯାଇଥିଲେ, ସେତେବେଳେ ତାହାଙ୍କର ବୟସ ଚତୁର୍ଦ୍ଦଶ ବର୍ଷ ମାତ୍ର ହୋଇଥିଲା । ସେଠାରେ ସେ ପ୍ରାୟ ଏକ ବର୍ଷ ଫରାସୀ ଭାଷାରେ କତିପୟ କାବ୍ୟ ଓ ଅନ୍ୟାନ୍ୟ ଗ୍ରନ୍ଥ ଅଧ୍ୟୟନ କରି ଇଂଲଣ୍ଡକୁ ଗଲେ ଏବଂ ଶେଷୋକ୍ତ ଦେଶରେ ଜର୍ମାନ ସାହିତ୍ୟ ଆଲୋଚନା କରିଥିଲେ । ଏହି ସମୟରେ ଫ୍ରାନ୍ସ ଓ ଜର୍ମାନୀ ଉଭୟ ଦେଶ-ମଧ୍ୟରେ ମହାଯୁଦ୍ଧ ଲାଗିଥିଲା ଏବଂ ଶେଷରେ ୧୮୭୦ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ସମ୍ପୂର୍ଣ୍ଣରୂପେ ପରାଜିତ ହୁଅନ୍ତେ, ଫ୍ରାନ୍ସର ସମ୍ରାଟ୍ ଓ ସାମ୍ରାଜ୍ଞୀ ସ୍ୱଦେଶରୁ ବହିଷ୍କୃତ ହେଲେ । ତରୁ ଫରାସୀ ସାହିତ୍ୟ ପଢ଼ି ପଢ଼ି ଫ୍ରାନ୍ସଦେଶପ୍ରତି ଏପରି ଅନୁରକ୍ତା ହୋଇଥିଲେ ଯେ, ଏହି ସମୟରେ ଅର୍ଥାତ୍ ପନ୍ଦର ବର୍ଷ ବୟସରେ ତାଙ୍କର ଦୈନିକ ବିବରଣୀରେ ଲେଖିଅଛନ୍ତି "ହାୟ ହାୟ ! ଫ୍ରାନ୍ସର ପତନ ! ଏ ସଂବାଦ ଶୁଣି ମୋର ହୃଦୟ ବିଦୀର୍ଣ୍ଣ ହୋଇଯାଉଅଛି । ହେ ଫ୍ରାନ୍ସ ! ତୋର ଅନେକ ପୁତ୍ରକନ୍ୟା, ପାପ ଓ ନାସ୍ତିକତା-ପଙ୍କରେ ନିମଗ୍ନ—ସେଥିଲାଗି କି ତୋର ଏହି ଭୟାନକ ପତନ ହେଲା ଏବେ ଧର୍ମବିହି ପରମେଶ୍ୱରଙ୍କର ପବିତ୍ର ପୂଜାଦ୍ୱାରା ଶୁଦ୍ଧ ହୋଇ ନବଜୀବନ ଲାଭକରିବାକୁ ଶିକ୍ଷା କର ।" ପନ୍ଦର ବର୍ଷର ବାଳିକାର କି ସ୍ୱର୍ଗୀୟ ଧର୍ମଭାବ ! ସୁଦୂର ପରଦେଶର ଦୁଃଖରେ କି ଉଦାର ସମବ୍ୟଥା !

ତରୁ ବହୁ ଅଧ୍ୟୟନ କରଥିଲେ । ଇଂରାଜୀ, ଫରାସୀ ଓ ଜର୍ମାନ ଭାଷାରେ ଲିଖିତ ଶତ ଶତ ସାରଗର୍ଭ ଗ୍ରନ୍ଥ ପଢ଼ିବା ଗୋଟିଏ ଏତଦ୍ଦେଶୀୟ ବାଳକା ପକ୍ଷରେ ଅଳ୍ପ ପ୍ରଶଂସାର କଥା ନୁହେ । ତାହାଙ୍କର ଅସାଧାରଣ ମେଧାଶକ୍ତି ଥିଲା ଏବଂ ଗଣି ଗଣି କବିତା ତାହାଙ୍କର କଣ୍ଠସ୍ଥ ଥିଲା । ସେ ଯାହା ପଢ଼ିଥିଲେ, ତାହା ସମ୍ୟକ୍‌ରୂପେ ବୁଝି ଆୟତ୍ତ କରଥିଲେ । ସେ ଶତ ଶତ ଫରାସୀ କବିତାକୁ ଇଂରାଜୀରେ ଅନୁବାଦ କରଥିଲେ ଏବଂ ଇଂରାଜୀରେ ବହୁ କବିତା ଓ ଫରାସୀଭାଷାରେ ଖଣ୍ଡେ ଉପନ୍ୟାସ ଓ ଅନେକଗୁଡ଼ିଏ ପ୍ରବନ୍ଧ ରଚନା କରଥିଲେ । ତାଙ୍କ ରଚିତ କବିତା ପ୍ରଭୃତି ପାଠ କର ଅନେକ ଇଂରାଜ ଓ ଫରାସୀ ସୁଲେଖକ ସେଗୁଡ଼ିକର ଭୂୟସୀ ପ୍ରଶଂସା କରଅଛନ୍ତି । ବୈଦେଶିକ ଭାଷାରେ କବିତାଦ ଲେଖି ଏପର ଯଶ ଅର୍ଜିବା ସାମାନ୍ୟ କଥା ନୁହେ ।

୧୮୭୩ ସାଲରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କର ତରୁ ପିତାଙ୍କ ସଙ୍ଗରେ ସଂସ୍କୃତଭାଷାର ଅଧ୍ୟୟନ ଆରମ୍ଭ କଲେ । ମାତୃଭାଷାରେ ଗ୍ରନ୍ଥ ଲେଖିବା ଅଭିପ୍ରାୟରେ ସେ ସଂସ୍କୃତ ରାମାୟଣ ମହାଭାରତାଦ ମହାକାବ୍ୟ ଓ ପୁରାଣମାନ ମନୋଯୋଗସହିତ ପଢ଼ୁଥିଲେ, ଏପର ସମୟରେ ମାରାତ୍ମକ ବ୍ୟାଧି ତାହାଙ୍କୁ ଆକ୍ରମଣ କଲା । ରୋଗ କ୍ରମେ ବୃଦ୍ଧିପ୍ରାପ୍ତ ହୋଇ ୧୮୭୭ ସାଲର ଅଗଷ୍ଟ ମାସର ୩୦ ତାରିଖ ଦନ ତାଙ୍କର ଐହିକ ଜୀବନ ବନାଶ କଲା । ଅତି ଅଳ୍ପ ବୟସରେ, ବାଇଶ ବର୍ଷ ପୂର୍ଣ୍ଣ ନୋହୁଣୁ, ତରୁ ଇହଲୋକର ଲୀଳା ସମ୍ବରଣ କଲେ ; କନ୍ତୁ ଏହି ଅଳ୍ପ ସମୟ ମଧ୍ୟରେ ସେ ଯେଉଁ ପ୍ରତିଭା ଓ ସଦ୍ଗୁଣର ଦୃଷ୍ଟାନ୍ତ ରଖିଯାଇଅଛନ୍ତି, ତାହା କଦାପି ବସ୍ମରଣୀୟ ନୁହେ । ସେ କେବଳ ଅଧ୍ୟୟନ ଦ୍ୱାରା ଜ୍ଞାନ ସଞ୍ଚୟ କରଥିଲେ, ଏମନ୍ତ ନୁହେ ; ସଞ୍ଚିତ ଜ୍ଞାନକୁ ସମ୍ୟକ୍ ଧାରଣା ଓ ଆଲୋଚନା ଦ୍ୱାରା ନିଜର ଆୟତ୍ତ କର ତାହାକୁ ସତ୍କବିତା ଓ ସୁପ୍ରବନ୍ଧର ରଚନାଦ୍ୱାରା ପ୍ରକାଶ କରଥିଲେ । ବଧାତାଙ୍କର ଅନନ୍ତ ପ୍ରକାଶଶକ୍ତି ଯୋଗୁଁ ଏହି ବଚିତ୍ର ବଶ୍ୱ-ସୃଷ୍ଟି ଉଦ୍ଭୂତ ହୋଇଅଛି ଏବଂ ହେଉଅଛି । ପରମେଶ୍ୱର ବଶେଷତ ମନୁଷ୍ୟକୁ ସେହି ପ୍ରକାଶଶକ୍ତି ଦେଇଥିବାରୁ ସାହିତ୍ୟ, ସଙ୍ଗୀତ-ବଦ୍ୟା, ଚିତ୍ର-ବଦ୍ୟା ପ୍ରଭୃତି ଏବଂ ପବତ୍ର ପ୍ରୀତଦୟାର ଅଗଣ୍ୟ କୀର୍ତ୍ତି ପ୍ରକାଶିତ ହୋଇଅଛି । ସର୍ବାଙ୍ଗ ସୁନ୍ଦର

ଶିକ୍ଷାହିଁ ନରନାରୀ ଉଭୟଙ୍କର ଶକ୍ତିବିକାଶର ମହୋପାୟ ଅଟେ । ସେହି ଶିକ୍ଷା ପ୍ରଦାନ କରିବା ମନୁଷ୍ୟ-ସମାଜର ଅବଶ୍ୟପାଳନୀୟ ପରମ କର୍ତ୍ତବ୍ୟ ଅଟେ ।

ପ୍ରଶ୍ନ

୧ । ପରଲୋକାନ୍ତରିତା, ଜ୍ଞାନାଲୋକ-ଲବ୍ଧ, ସର୍ବାଙ୍ଗ-ସୁନ୍ଦର, ଧର୍ମୀବିଦ୍ଧ, ଏ ପଦଗୁଡ଼ିକର ସମାସ ବ୍ୟାଖ୍ୟା କର ।

୨ । ନାରୀଜାତିର ଶିକ୍ଷା-ବିଷୟରେ ଗୋଟିଏ ପ୍ରବନ୍ଧ ଲେଖ ।

୩ । "ବିଧାତାଙ୍କର ଅନନ୍ତ ପ୍ରକାଶଶକ୍ତି ଯୋଗୁଁ ଏହି ବିଚିତ୍ର ବିଶ୍ୱ-ସୃଷ୍ଟି ଉଦ୍ଭୂତ ହୋଇଅଛି ଏବଂ ହେଉଅଛି," ଏହି ବାକ୍ୟର ଅର୍ଥକୁ ବିସ୍ତାରିତରୂପେ ପ୍ରକାଶ କର ।

୪ । ବିଜ୍ଞାନ କାହାକୁ ଓ ଦର୍ଶନଶାସ୍ତ୍ର କାହାକୁ ବୋଲାଯାଏ ?

୫ । ସଞ୍ଚିତ ଜ୍ଞାନକୁ ସମ୍ୟକ୍ ଧାରଣା ଓ ଆଲୋଚନା ଦ୍ୱାରା ଆୟତ୍ତ କରିବା କାହାକୁ କହନ୍ତି, ତାହା ତୁମ୍ଭର ଦୈନିକ ଅଧ୍ୟୟନର ବିଷୟକୁ ଅବଲମ୍ବନ କରି ବୁଝାଇଦିଅ ।

# ହିମାଳୟ

ଯେଉଁ ନଗାଧିରାଜ ହିମାଳୟର ବଚନାତୀତ ମହିମା ବର୍ଣ୍ଣନ କରିବାକୁ ଯାଇ ବ୍ୟାସ ବାଲ୍ମୀକି କାଳିଦାସ ପ୍ରଭୃତି ମହାକବିମାନଙ୍କର କଳ୍ପନା, ଧାରଣା ଓ ପ୍ରକାଶ-ଶକ୍ତି ପରାଜୟ ସ୍ୱୀକାର କରିଅଛି, ତାହାର ଦିଗନ୍ତ ବ୍ୟାପୀ ମହା ଗମ୍ଭୀର ମହା ବିରାଟ ମହା ବିସ୍ମୟକର ଦୃଶ୍ୟରାଜିର ଦର୍ଶନରେ କାହାର ମନ ସ୍ତବ୍ଧ ହେବ ନାହିଁ ? ପ୍ରକାଣ୍ଡ ହିମାଦ୍ରିପ୍ରଦେଶ ଦିଗଦିଗନ୍ତର-ପ୍ରସାରିତ ମହାସମୁଦ୍ରସଦୃଶ । ସେଥିରେ ଗଗନଭେଦୀ ଗୌରୀଶଙ୍କରାଦି ମହୋଚ୍ଚ ତୁଷାରକିରୀଟୀ ଶତ ଶତ ଧବଳ ଗିରିଶିଖରମାଳା ସମୁଦ୍ରବକ୍ଷରେ ନୃତ୍ୟ ପ୍ରକାଶିତ ଉତ୍ତୁଙ୍ଗ ଲହରୀମାଳାପରି

ଶାଶ୍ୱତ ମହିମାରେ ବିରାଜିତ । ହିମାଦ୍ରି-ବକ୍ଷରୁ ପଞ୍ଚନଦୀସମନ୍ୱିତ ସିନ୍ଧୁ, ଆର୍ଯ୍ୟାବର୍ତ୍ତର ଜନନୀରୂପିଣୀ ଯମୁନା-ସଙ୍ଗିନୀ ମହାନଗରୀ-ମାଳିନୀ ତପୋଧନସେବିତା ସୁଧାମୟୀ ଗଙ୍ଗା, ପୂର୍ବାଞ୍ଚଳ-ପ୍ଲାବୀ ଶତୋପନଦୀସେବିତ ମହାପ୍ରବାହ ବ୍ରହ୍ମପୁତ୍ର ଏବଂ ଆହୁରି ଶତ ଶତ କ୍ଷୁଦ୍ର ବୃହତ୍ ନଦୀମାନେ ନିସ୍ୟନ୍ଦିତ ହୋଇ ଶତ ଶତ ପ୍ରଦେଶକୁ ଉର୍ବର କରୁଅଛନ୍ତି ! ଏହାର ମେଖଳ-ପ୍ରଦେଶରେ ମେଘମାଳା ସର୍ବଦା ବିଚରଣ କରୁଅଛି । ଏହାର ବକ୍ଷରେ ଓ ପାଦଦେଶରେ ପ୍ରକାଣ୍ଡକାୟ ଶାଳ ଦେବଦାରୁ ପ୍ରଭୃତି ବନସ୍ପତିର ଅରଣ୍ୟାନୀ ଏବଂ ଅଗଣ୍ୟ-ପ୍ରକାର ବୃକ୍ଷଲତାପରିପୂର୍ଣ୍ଣ ନିବିଡ଼ ବନ ପ୍ରସାରିତ ରହିଅଛି । ଏହାର ନାନା ଦିଗ୍‌ଭାଗରେ କେତେ ଅଧିତ୍ୟକା ଓ ଉପତ୍ୟକା, କେତେ ଜନପଦ, କେତେ ଗିରିଦରୀ ଓ ଗିରିନିର୍ଝରିଣୀ, କେତେ ଜଳପ୍ରପାତ ଓ ହ୍ରଦ, କେତେ ଗିରିସଙ୍କଟ ଏବଂ କେତେ ଶସ୍ୟକ୍ଷେତ୍ର ଓ ରତ୍ନଖଣି, କେତେ ଅପରିଜ୍ଞାତ ଅନାବିଷ୍କୃତ ପ୍ରଦେଶ ବିଦ୍ୟମାନ ରହିଅଛି ତାହା କିଏ କହିପାରିବ ?

ଚୀନଦେଶର ପ୍ରାନ୍ତରୁ ହିନ୍ଦୁକୁଶପର୍ବତ ପର୍ଯ୍ୟନ୍ତ ଯେଉଁ ମହା ପର୍ବତଶ୍ରେଣୀ ଆଗ୍ନେୟକୋଣରୁ ବାୟବ୍ୟ କୋଣଆଡ଼କୁ ପ୍ରସାରିତ ରହିଅଛି, ହିମାଳୟ ସେହି ପର୍ବତଶ୍ରେଣୀର ଅନ୍ତର୍ଗତ । ପୂର୍ବଦିଗରେ ଯେଉଁଠାରେ ବ୍ରହ୍ମପୁତ୍ର ଦକ୍ଷିଣାଭି-ମୁଖରେ ଗତି କରିବାକୁ ଆରମ୍ଭ କରିଅଛି ସେହିଠାରୁ, ଯେଉଁଠାରେ ସିନ୍ଧୁନଦୀ ଦକ୍ଷିଣାଭିମୁଖୀ ହୋଇଅଛି ସେପର୍ଯ୍ୟନ୍ତ ବିସ୍ତାରିତ ପାର୍ବତ୍ୟ ପ୍ରଦେଶକୁ ହିମାଳୟ-ଶ୍ରେଣୀ ବୋଲାଯାଏ । ଏହି ପର୍ବତଶ୍ରେଣୀର ଦୈର୍ଘ୍ୟ ୧୯୦୦ ମାଇଲ ଏବଂ ପ୍ରସ୍ଥ ପ୍ରାୟ ୧୫୦ ମାଇଲ ହେବ । ଏହି ସମୁଦାୟ ପାର୍ବତ୍ୟ ଅଞ୍ଚଳର କ୍ଷେତ୍ର-ଫଳ ପ୍ରାୟ ଏକଲକ୍ଷ ଷଷ୍ଟିସହସ୍ର ବର୍ଗମାଇଲ ଅଟେ । ହିମାଳୟ ଉଚ୍ଚତାରେ ପୃଥିବୀର ଅନ୍ୟ ସମସ୍ତ ପର୍ବତଙ୍କୁ ଜିଣିଅଛି । ଏହାର ଉଚ୍ଚତମ ଶୃଙ୍ଗ ଗୌରୀଶଙ୍କର (ଇଂରାଜନାମ ଏବରେଷ୍ଟ) ସମୁଦ୍ରପୃଷ୍ଠରୁ ୨୯୦୦୦ ଫୁଟ ଅର୍ଥାତ୍ ସାଢ଼େ ପାଞ୍ଚ ମାଇଲରୁ ଅଧିକ ଅଟେ । କାଞ୍ଚନଜଙ୍ଘା ପ୍ରାୟ ୨୮୦୦୦ ଫୁଟ ଓ ଧବଳଗିରି ପ୍ରାୟ ୨୭୦୦୦ ଫୁଟ ଉଚ୍ଚ । ଏହି ସୁପ୍ରସିଦ୍ଧ ଶୃଙ୍ଗତ୍ରୟ ଛଡ଼ା ବଦରୀନାଥ, ଚମ-ଲାରୀ ପ୍ରଭୃତି ଅନେକ ଶୃଙ୍ଗ ତୁଷାରଛନ୍ନ ମହିମାରେ ବିରାଜିତ ରହିଅଛନ୍ତି ।

ଏହି ପର୍ବତଶ୍ରେଣୀର ଏକ ପାର୍ଶ୍ୱରୁ ଅପର ପାର୍ଶ୍ୱକୁ ଯାତାୟାତ କରିବା ପାଇଁ ଅନେକ ଦୁର୍ଗମ ସଙ୍କୀର୍ଣ୍ଣ ପଥ ଅଛି । ସେମାନଙ୍କୁ ଘାଟି ବା ଗିରିସଙ୍କଟ ବୋଲାଯାଏ । ଏହି ସଙ୍କଟ ବର୍ତ୍ମମାନଙ୍କରେ କୌଣସି ସ୍ଥଳରେ ପାର୍ବତ୍ୟ ଘୋଟକ ଏବଂ କୌଣସି ସ୍ଥଳରେ ପାର୍ବତ୍ୟ ମେଷ ଉପରେ ବୋଝ ଲଦି ପଥିକମାନେ ବହୁକଷ୍ଟରେ ଗମନାଗମନ କରନ୍ତି । ଏହି ଗିରି-ସଙ୍କଟମାନ ଦଶସହସ୍ର ଫୁଟଠାରୁ ଅଠର ସହସ୍ର ଫୁଟ ପର୍ଯ୍ୟନ୍ତ ଉଚ୍ଚ ଥିବାର ଜଣାଯାଇଅଛି ।

ହିମାଲୟ ହିମ ବା ବରଫର ନିତ୍ୟଆଳୟ । ୧୬୦୦୦ ଫିଟ ଉଚ୍ଚ ଓ ତଦପେକ୍ଷା ଉଚ୍ଚତର ପ୍ରଦେଶମାନ ନିତ୍ୟ ତୁଷାରାବୃତ ଅଟେ । ସେ ପ୍ରଦେଶ-ମାନଙ୍କରେ ବନସ୍ପତି ବା ଶସ୍ୟ ଜନ୍ମିପାରେ ନାହିଁ । ଦକ୍ଷିଣଦିଗରେ ଦଶହଜାର ଫୁଟ ପର୍ଯ୍ୟନ୍ତ ଶାଳପଦ୍ମ, ଦେବଦାରୁବନ ଓ ଶସ୍ୟକ୍ଷେତ୍ର ଦେଖାଯାଏ ଏବଂ ଉତ୍ତର ଦିଗରେ ତେରହଜାର ଫୁଟ ପର୍ଯ୍ୟନ୍ତ ମନୁଷ୍ୟର ଆବାସ, ଧାନ୍ୟ ଗୋଧୂମ କ୍ଷେତ୍ରାଦି ଓ ଦୁଇ ତିନ ପ୍ରକାରର ବନସ୍ପତି ଦେଖାଯାଏ ।

ଏହି ପର୍ବତଶ୍ରେଣୀର ନାନା ପ୍ରଦେଶରେ ନାନାପ୍ରକାର ଅଶ୍ୱ, ଗବୟ, ଚମରୀ, ଛାଗଳ, କସ୍ତୁରୀମୃଗ ପ୍ରଭୃତି ଜନ୍ତୁମାନେ ଆରଣ୍ୟ ଅବସ୍ଥାରେ ବିଚରଣ କରିବାର ଦେଖାଯାଏ ଏବଂ ସ୍ୱର୍ଣ୍ଣ, ତାମ୍ର, ସୀସକ, ଲୌହ, ଗନ୍ଧକ, ସୈନ୍ଧବ ପ୍ରଭୃତି ଧାତବ ଦ୍ରବ୍ୟ ମିଳେ । ହିମାଳୟ-ପର୍ବତଶ୍ରେଣୀର ଯେଉଁ ପର୍ବତରୁ ଗଙ୍ଗା-ନଦୀ ବାହାରିଅଛି ତାହାର ନାମ ଗଙ୍ଗୋତ୍ରୀ । ଏହି ପର୍ବତ ନିକଟରେ ଗୋମୁଖୀନାମରେ ଗୋଟିଏ ତୀର୍ଥ ଅଛି । ସେଠାରେ ସ୍ତୂପିକୃତ ତୁଷାରର ଗୋଟିଏ ହିମବପ୍ରର ପାଦତଳରେ ଗୋମୁଖୀ ତୀର୍ଥ । ସେହିଠାରୁ ଗଙ୍ଗା ପ୍ରବାହିତ ହୋଇଅଛି । ତାହାର ଉତ୍ପତ୍ତିସ୍ଥାନ ସମୁଦ୍ରପୃଷ୍ଠରୁ ପ୍ରାୟ ୧୪୦୦୦ ଫୁଟ ଉଚ୍ଚ । ଉତ୍ପତ୍ତିସ୍ଥଳରେ ଗଙ୍ଗାର ପ୍ରସ୍ଥ ପ୍ରାୟ ୬୦ ହାତ ଓ ଗଭୀରତା ପ୍ରାୟ ଏକ ହାତ ହେବ । ଗଙ୍ଗା କିଛିଦୂର ପ୍ରବାହିତ ହୋଇ ଅଲକନନ୍ଦା ନାମକ ନଦୀସଙ୍ଗେ ମିଳି ହରିଦ୍ୱାର ପର୍ଯ୍ୟନ୍ତ ଅବତରଣ କରି କ୍ରମେ ନିମ୍ନଭୂମିରେ ପ୍ରବାହିତ ହୋଇ, ପ୍ରୟାଗଠାରେ ପ୍ରସିଦ୍ଧ ଯମୁନାନଦୀ ସଙ୍ଗରେ ସଙ୍ଗତ ହୋଇ ପରେ ଉତ୍ତର ଓ

ଏବଂ ସେଥିମଧ୍ୟରେ ସ୍ତ୍ରୀମାନଙ୍କର ଅବଲୋକନାର୍ଥ ସୁରମ୍ୟ ଗୃହ ନିର୍ମାଣ କରନ୍ତେ । ପୁରବାସୀମାନଙ୍କର ଦର୍ଶନାର୍ଥ ଉଚ୍ଚ ମଞ୍ଚମାନ ସୁସଜ୍ଜିତ ହେବାକୁ ଲାଗିଲା ।

ଅନନ୍ତର ନିର୍ଦ୍ଦିଷ୍ଟ ଦିନ ଉପସ୍ଥିତ ହୁଅନ୍ତେ ମହାରାଜ ଧୃତରାଷ୍ଟ୍ର ମନ୍ତ୍ରୀମାନଙ୍କ ସଙ୍ଗରେ ମୁକ୍ତାଜାଲମଣ୍ଡିତ ବୈଦୂର୍ଯ୍ୟମଣିଶୋଭିତ ଦର୍ଶନାଗାରରେ ପ୍ରବିଷ୍ଟ ହେଲେ । ମହାଭାଗା ଗାନ୍ଧାରୀ ଓ ଅନ୍ୟାନ୍ୟ ରାଜମହିଷୀମାନେ ମହାର୍ଘ ପରିଚ୍ଛଦ ପରିଧାନ କରି ଦାସୀଗଣସଙ୍ଗେ ନିର୍ଦ୍ଦିଷ୍ଟ ଗୃହରେ ପ୍ରବେଶ କଲେ । ପୌର ଓ ଜାନପଦ ନାନା ଲୋକେ ରାଜକୁମାରମାନଙ୍କର ଅସ୍ତ୍ରପରୀକ୍ଷା ଦେଖିବା ପାଇଁ ରଙ୍ଗଭୂମିରେ ଉପସ୍ଥିତ ହେଲେ । ଅସଂଖ୍ୟ ଦର୍ଶକଙ୍କର କୋଲାହଳରେ ରଙ୍ଗସ୍ଥଳ ଉତ୍ତାଳତରଙ୍ଗାକୁଳ ସମୁଦ୍ରପ୍ରାୟ ପ୍ରତିଧ୍ୱନିତ ହେବାକୁ ଲାଗିଲା । ନିରୂପିତ ସମୟ ଉପସ୍ଥିତ ହୁଅନ୍ତେ, ବାଦ୍ୟକରବୃନ୍ଦ ମଧୁର ଧ୍ୱନିରେ ବାଦ୍ୟଯନ୍ତ୍ରମାନ ବାଦନ କରି ଦର୍ଶକବୃନ୍ଦଙ୍କର କୌତୂହଳ ବର୍ଦ୍ଧନ କରିବାକୁ ଲାଗିଲେ । ଏହି ଅବସରରେ ଶୁକ୍ଳାମ୍ବରଧାରୀ ଶୁକ୍ଳକେଶ ଶୁକ୍ଳଶ୍ମଶ୍ରୁ ଶୁକ୍ଳ-ଚନ୍ଦନାନୁଲିପ୍ତକଳେବର ମହାତେଜା ଦ୍ରୋଣାଚାର୍ଯ୍ୟ ପୁତ୍ର ଅଶ୍ୱତ୍ଥାମାଙ୍କ ସଙ୍ଗେ ରଙ୍ଗଭୂମିରେ ଉପସ୍ଥିତ ହୋଇ ପୁରୋହିତ ଦ୍ୱାରା ମାଙ୍ଗଳିକ କ୍ରିୟା ସମ୍ପାଦନ କରାଇ ଅସ୍ତ୍ରଶସ୍ତ୍ରାଦି ଯଥାସ୍ଥାନରେ ସ୍ଥାପନ କରାଇଲେ ।

ଅନନ୍ତର ମହାବୀର୍ଯ୍ୟ ରାଜପୁତ୍ରମାନେ ଅଙ୍ଗୁଳିରେ ଅଙ୍ଗୁଳିତ୍ର ଯୋଜନା କରି ବଦ୍ଧତୂଣ ଓ ବଦ୍ଧପରିକର ହୋଇ ହସ୍ତରେ ଧନୁ ଧାରଣ କରି ଜ୍ୟେଷ୍ଠ-କନିଷ୍ଠକ୍ରମେ ରଙ୍ଗସ୍ଥଳରେ ପ୍ରବେଶ କଲେ ।

ପ୍ରଥମେ କୁମାରମାନେ ଅସ୍ତ୍ରଶସ୍ତ୍ର ନିକ୍ଷେପ କରିବାକୁ ଲାଗିଲେ । ତଦନନ୍ତର ରାଜପୁତ୍ରମାନେ ବେଗଶାଳୀ ଘୋଟକମାନ ଆରୋହଣ କରି ସ୍ୱନାମାଙ୍କିତ ବାଣଦ୍ୱାରା ନାନା ଲକ୍ଷ୍ୟ ଭେଦ କରି ପ୍ରଶଂସା ଲାଭ କଲେ । ତହିଁଉତ୍ତାରେ ସେମାନେ ରଥାରୂଢ଼ ହୋଇ ମଣ୍ଡଳାକାରରେ ଭ୍ରମଣ କରିବାକୁ ଲାଗିଲେ । ପରେ ଅସିଚର୍ମ ଘେନି କେହି ଅଶ୍ୱାରୂଢ଼, କେହି ବା ଗଜାରୂଢ଼ ହୋଇ ପରସ୍ପର ଦ୍ୱନ୍ଦ୍ୱଯୁଦ୍ଧ କରିଲେ । ଭ୍ରାମ୍ୟମାଣ ତରବାରିର ରଶ୍ମି ଚତୁର୍ଦ୍ଦିଗରେ ବିକୀର୍ଣ୍ଣ

ହୋଇ ଅପୂର୍ବ ଶୋଭା ପ୍ରକାଶ କଲା । ଦର୍ଶକମଣ୍ଡଳୀ ବିସ୍ମୟାଭିଭୂତ ହୋଇ ସାଧୁବାଦ ପ୍ରଦାନ କରିବାକୁ ଲାଗିଲେ । ତଦନନ୍ତର ଭୀମ ଓ ଦୁର୍ଯ୍ୟୋଧନଙ୍କର ଗଦାଯୁଦ୍ଧ ଆରମ୍ଭ ହେଲା । ସେମାନେ ସିଂହନାଦପୂର୍ବକ ମଣ୍ଡଳାକାରରେ ଭ୍ରମଣ କରିବାର ଦେଖି ଏବଂ ଉଭୟଙ୍କର ତୁଲ୍ୟ ବୀର୍ଯ୍ୟ ଦର୍ଶନ କରି ଦର୍ଶକ-ମଣ୍ଡଳୀ ଦୁଇଦଳ ହୋଇ, କେହି ଦୁର୍ଯ୍ୟୋଧନଙ୍କର, କେହି ଭୀମଙ୍କର ପକ୍ଷ ଅବଲମ୍ବନ କରିବାକୁ ଲାଗିଲେ ।

ରଙ୍ଗଭୂମିରେ ଯାହା ଯାହା ଘଟୁଥିଲା, ବିଦୁର ମହାରାଜ ଧୃତରାଷ୍ଟ୍ରଙ୍କୁ ଏବଂ ପାଣ୍ଡବଜନନୀ କୁନ୍ତୀ, କୌରବଜନନୀ ପଟ୍ଟାବୃତନେତ୍ରା ଗାନ୍ଧାରୀଙ୍କୁ ଶୁଣାଉଥିଲେ । ଅନନ୍ତର ଦ୍ରୋଣ ବାଦ୍ୟଧ୍ୱନି ନିବାରଣ କରି ରଙ୍ଗମଧ୍ୟରେ ଦଣ୍ଡାୟମାନ ହୋଇ କହିଲେ "ହେ ଦର୍ଶକବୃନ୍ଦ ! ମୋର ଶିଷ୍ୟମାନଙ୍କ ମଧ୍ୟରେ ଅର୍ଜ୍ଜୁନ ନିଃସନ୍ଦେହରୂପେ ସର୍ବଶ୍ରେଷ୍ଠ; ଏହାଙ୍କର କୃତିତ୍ୱ ଦର୍ଶନ କର ।"

ଅନନ୍ତର ଅର୍ଜ୍ଜୁନ ନିଜ ଶକ୍ତି ପ୍ରଦର୍ଶନ କରିବାକୁ ଲାଗିଲେ । ସେ ପ୍ରଥମେ ଆଗ୍ନେୟାସ୍ତ୍ର, ବାରୁଣାସ୍ତ୍ର ଓ ବାୟବ୍ୟାସ୍ତ୍ର ପ୍ରଭୃତି ନାନାବିଧ ବାଣ-ପ୍ରୟୋଗର ଅଦ୍ଭୁତ କୌଶଳ ଦେଖାଇ ସ୍ଥୂଳସୂକ୍ଷ୍ମ ନାନାବିଧ ବସ୍ତୁକୁ ବାଣଦ୍ୱାରା ବିଦ୍ଧ କଲେ ଏବଂ ଘୂର୍ଣ୍ଣ୍ୟମାନ ଲୌହମୟ ବରାହର ମୁଖବିବରରେ ଏକ ମୁହୂର୍ତ୍ତରେ ପଞ୍ଚବାଣ ଓ ରଜ୍ଜୁଦ୍ୱାରା ଲମ୍ବିତ ଗୋଶୃଙ୍ଗମଧ୍ୟରେ ଏକବିଂଶତି ବାଣ ବିଦ୍ଧ କଲେ । ଏହାପରେ ଧନୁ, ଅସି ଓ ଗଦା ଦ୍ୱାରା ନାନାବିଧ କୌଶଳ-ପ୍ରଦର୍ଶନ ସମାପ୍ତ ହେଲାକ୍ଷଣି ରଙ୍ଗଭୂମିର ଦ୍ୱାରଦେଶରେ କୌଣସି ବୀରପୁରୁଷର ବାହ୍ୱାସ୍ଫୋଟନ ଶୁଣାଗଲା । ତଦନନ୍ତର ମହାବୀର କର୍ଣ୍ଣ ଦିବ୍ୟ କବଚ ଓ କୁଣ୍ଡଳରେ ଶୋଭିତ ହୋଇ ରଙ୍ଗମଧ୍ୟରେ ପ୍ରବେଶ କରି ଗର୍ବଭରେ ଚତୁଆଡ଼କୁ ଦୃଷ୍ଟିପାତ କରି ଦ୍ରୋଣାଚାର୍ଯ୍ୟଙ୍କୁ ଅଭିବାଦନ କଲେ । ଅନନ୍ତର କର୍ଣ୍ଣ ଅର୍ଜ୍ଜୁନଙ୍କୁ ସମ୍ବୋଧନ କରି କହିଲେ "ହେ ପାର୍ଥ ! ତୁମ୍ଭେ ମନେ-କରିଅଛ ଏକମାତ୍ର ତୁମ୍ଭେ ବୀରଶ୍ରେଷ୍ଠ ଅଟ, ଦେଖ, ମୁଁ ଏହିସମସ୍ତ ଅଦ୍ଭୁତ କର୍ମ ସାଧନ କରିବି ।" ଏହା କହି ଦ୍ରୋଣଙ୍କ ଅନୁମତି ନେଇ କର୍ଣ୍ଣ ନିଜ

ଶକ୍ତି ପ୍ରଦର୍ଶନ କଲେ । ଦୁର୍ଯ୍ୟୋଧନ ଏତେବେଳଯାଏ ଅର୍ଜ୍ଜୁନଙ୍କର ପ୍ରଶଂସା ଶୁଣି ଶୁଣି ଈର୍ଷ୍ୟାରେ କ୍ଷୁବ୍ଧ ହୋଇଥିଲେ, ଏବେ ଅର୍ଜ୍ଜୁନଙ୍କର ସମକକ୍ଷ ପ୍ରତିଦ୍ୱନ୍ଦ୍ୱୀ ଉପସ୍ଥିତ ହେବାରୁ ହୃଷ୍ଟ ହେଲେ । କର୍ଣ୍ଣ ଅର୍ଜ୍ଜୁନକୃତ ସମସ୍ତ ଅସ୍ତ୍ର ସାଧନ କରି ଦର୍ଶକମାନଙ୍କୁ ଚମତ୍କୃତ କରନ୍ତେ ଦୁର୍ଯ୍ୟୋଧନ ଆହ୍ଲାଦ-ଭରରେ କର୍ଣ୍ଣଙ୍କୁ ଆଲିଙ୍ଗନ କଲେ । ତଦନନ୍ତର କର୍ଣ୍ଣ ଅର୍ଜ୍ଜୁନଙ୍କ ସଙ୍ଗେ ଦ୍ୱନ୍ଦ୍ୱଯୁଦ୍ଧଦ୍ୱାରା ତାହାଙ୍କର ବଳ ପରୀକ୍ଷା କରିବାର ଇଚ୍ଛା ପ୍ରକାଶ କରନ୍ତେ, ଅର୍ଜ୍ଜୁନ କ୍ରୋଧଭରରେ କହିଲେ "ହେ ଅନାହୂତ ବର୍ବର ! ଆଜ ତୁମ୍ଭର ପ୍ରାଣ ସଂହାର କରି ତୁମ୍ଭର ସ୍ପର୍ଦ୍ଧାର ଦଣ୍ଡବିଧାନ କରିବି ।" କର୍ଣ୍ଣ ଦର୍ପଭରରେ ଉତ୍ତର ଦେଲେ "ଏ ରଙ୍ଗଭୂମିରେ ତୁମ୍ଭର କୌଣସି ବିଶେଷ ପ୍ରଭୁତ୍ୱ ନାହିଁ । ଆସ, ମୋର ଶାସ୍ତି ଏହିକ୍ଷଣି ଭୋଗ କରିବ ।" ଅନନ୍ତର ଅର୍ଜ୍ଜୁନ ଦ୍ରୋଣଙ୍କର ଅନୁମତି ନେଇ ଯୁଦ୍ଧାର୍ଥ କର୍ଣ୍ଣଆଡ଼କୁ ଅଗ୍ରସର ହେଲେ । କର୍ଣ୍ଣ ମଧ୍ୟ ଅର୍ଜ୍ଜୁନଙ୍କର ସମ୍ମୁଖୀନ ହେଲେ । ସଭାସ୍ଥ ସମସ୍ତେ ମନେ ମନେ ଦୁଇ ଦଳରେ ବିଭକ୍ତ ହୋଇ କେହି ଅର୍ଜ୍ଜୁନଙ୍କର, କେହି ବା କର୍ଣ୍ଣଙ୍କର ପକ୍ଷ ଅବଲମ୍ବନ କଲେ ।

ଇତିମଧ୍ୟରେ ନୀତିକୁଶଳ କୃପାଚାର୍ଯ୍ୟ ଯୁଦ୍ଧ ନିବାରଣ କରିବା ଅଭିପ୍ରାୟରେ କର୍ଣ୍ଣଙ୍କୁ କହିଲେ, "ଅଜ୍ଞାତକୁଳଶୀଳ ବ୍ୟକ୍ତି ସଙ୍ଗରେ ରାଜତନୟମାନଙ୍କର ଯୁଦ୍ଧ କରିବାର ନିୟମ ନାହିଁ । ତୁମ୍ଭେ ଯଦି କୌଣସି ରାଜବଂଶର ସନ୍ତାନ ଅଟ, ତାହା ଆଗେ ଜଣାଇଲେ ପାଣ୍ଡୁନନ୍ଦନ ଅର୍ଜ୍ଜୁନ ତୁମ୍ଭର ପ୍ରତିଯୋଦ୍ଧା ହେବେ ।" ଏହି କଥା ଶୁଣି ନିଜର ଜନ୍ମବୃତ୍ତାନ୍ତ ଜାଣି ନ ଥିବାରୁ କର୍ଣ୍ଣ ଲଜ୍ଜାରେ ଅଧୋମୁଖ ହୋଇ ରହିଲେ । ଦୁର୍ଯ୍ୟୋଧନ କର୍ଣ୍ଣଙ୍କର ଅବମାନନା ସହି ନ ପାରି ଉତ୍ତର କଲେ "ହେ ଆଚାର୍ଯ୍ୟ ! ମୁଁ ଜାଣିଥିଲି ଯେ ବୀର ସଙ୍ଗରେ ବୀରମାତ୍ରର ଯୁଦ୍ଧାଧିକାର ଅଛି । ଯାହାହେଉ, ଅର୍ଜ୍ଜୁନ ଯଦି ରାଜା ଛଡ଼ା ଅନ୍ୟ କାହାରି ସଙ୍ଗରେ ଯୁଦ୍ଧ କରିବେ ନାହିଁ, ତାହା ହେଲେ ମୁଁ ଏହିକ୍ଷଣି କର୍ଣ୍ଣଙ୍କୁ ଅଙ୍ଗରାଜ୍ୟର ରାଜପଦରେ ଅଭିଷେକ୍ତ କରୁଅଛି । ଏହା କହି ସେ ତତ୍କ୍ଷଣାତ୍ କର୍ଣ୍ଣଙ୍କୁ ସୁବର୍ଣ୍ଣପୀଠ ଉପରେ ବସାଇ ଅଙ୍ଗରାଜ୍ୟରେ ଯଥାବିଧି

ଅଭିଷିକ୍ତ କଲେ । ଦୁର୍ଯ୍ୟୋଧନ କର୍ଣ୍ଣଙ୍କର ମାନ ରକ୍ଷା କରିବାରୁ କର୍ଣ୍ଣ ଦୁର୍ଯ୍ୟୋଧନଙ୍କ ପ୍ରତି ଯତ୍ପରୋନାସ୍ତି କୃତଜ୍ଞ ହେଲେ ଏବଂ କହିଲେ "ମହାରାଜ ! ତୁମ୍ଭର ପ୍ରତ୍ୟୁପକାର କରିବା ମୋର ସାଧ୍ୟାତୀତ । ତଥାପି ତୁମ୍ଭପାଇଁ ଏ ଜୀବନ ଦେବାକୁ ମୁଁ ପ୍ରସ୍ତୁତ ଅଛି ।" ଦୁର୍ଯ୍ୟୋଧନ ପ୍ରୀତମନରେ କର୍ଣ୍ଣଙ୍କ ସଙ୍ଗେ ଚିରସଖ୍ୟ ସ୍ଥାପନ କଲେ ।

ଏହି ସମୟରେ କର୍ଣ୍ଣଙ୍କର ପାଳକପିତା ଅଧିରଥନାମା ସୂତ ମହିମା ରଙ୍ଗମଧ୍ୟରେ ଉପସ୍ଥିତ ହେଲେ । ମହାବୀର କର୍ଣ୍ଣ ପିତାଙ୍କୁ ଦେଖି ଧନୁର୍ବାଣ ତ୍ୟାଗ କରି ତାହାଙ୍କୁ ଭକ୍ତିଭରେ ପ୍ରଣାମ କଲେ ; ଅଧିରଥ କର୍ଣ୍ଣଙ୍କ ଅଭିଷିକ୍ତ ଶରୀର ଦେଖି 'ବତ୍ସ' ସମ୍ବୋଧନପୂର୍ବକ ତାହାଙ୍କର ମସ୍ତକକୁ ଆନନ୍ଦାଶ୍ରୁରେ ଅଭିଷିକ୍ତ କଲେ । ଏହାଦେଖି ଭୀମ ଉପହାସ କରି କହିଲେ, "ସୂତନନ୍ଦନ ! ଯୁଦ୍ଧକ୍ଷେତ୍ରରେ ଅର୍ଜ୍ଜୁନପରି ବୀର ସଙ୍ଗରେ ଯୁଦ୍ଧ କରିବା ତୁମ୍ଭ ପକ୍ଷରେ ନିତାନ୍ତ ଅମଙ୍ଗଳକର । ତୁମ୍ଭ ପକ୍ଷରେ କୁଳୋଚିତ ସାରଥ୍ୟହିଁ ଶ୍ରେୟସ୍କର ।" ଏହି ଉଦ୍ଧତ ବାକ୍ୟରେ କର୍ଣ୍ଣ କ୍ରୋଧରେ ଅଧୀର ହେଲେ, ତାହାଙ୍କର ଅଧର କମ୍ପିତ ହେବାକୁ ଲାଗିଲା ଏବଂ ସେ କିଛି କ୍ଷଣରେ ଆପଣାକୁ ସମ୍ଭାଳିନେଇ ଅସ୍ତଗାମୀ ସୂର୍ଯ୍ୟଙ୍କୁ ଆକୁଳନୟନରେ ନିରୀକ୍ଷଣ କରିବାକୁ ଲାଗିଲେ । ଅଭିମାନୀ ଦୁର୍ଯ୍ୟୋଧନ ଭୀମର ବିଦ୍ରୂପ ବାକ୍ୟରେ ଅଧିର [illegible] ମତ୍ତହସ୍ତୀ ପରି ସିଂହାସନରୁ ଉଠି କହିଲେ "ହେ ଭୀମ ! ତୁମ୍ଭର ଅଚିନ୍ତ୍ୟ ଉକ୍ତି କେବଳ ତୁମ୍ଭପରି ବର୍ବରକୁ ଶୋଭାପାଏ । ଯିଏ ନିଜ ଭୁଜବଳରେ ସମଗ୍ର ପୃଥିବୀ ଜୟ କରିବାକୁ ସମର୍ଥ, ତାଙ୍କ ପକ୍ଷରେ ଅଙ୍ଗରାଜ୍ୟର ରାଜା ହେବା ଅତି ଅକିଞ୍ଚିତ୍କର ବ୍ୟାପାର ଅଟେ । ଯେବେ ତାଙ୍କର ଅଙ୍ଗରାଜ୍ୟ ଭୋଗ ବିଷୟରେ କାହାର ବିଦ୍ୱେଷ ଥାଏ, ସେ ମୋ ସଙ୍ଗରେ ଯୁଦ୍ଧ କରନ୍ତୁ ।" ଏହି ଉକ୍ତି ଶ୍ରବଣ କରି ସଭାସ୍ଥ ଲୋକେ ଦୁର୍ଯ୍ୟୋଧନଙ୍କୁ ଧନ୍ୟ ଧନ୍ୟ କହିଲେ ।

ଏହି ସମୟରେ ସୂର୍ଯ୍ୟ ଅସ୍ତମିତ ହେବାରୁ ସେଦିନର ଅସ୍ତ୍ରପରୀକ୍ଷା ପ୍ରଦର୍ଶନ ସମାପ୍ତ ହେଲା ।

## ପ୍ରଶ୍ନ

କୃତ... , ମ...ଶା, ଶୁକ୍ଳଶ୍ମଶ୍ରୁ, ଶୁକ୍ଳଚନ୍ଦନାନୁଲିପ୍ତ-କଳେବର, ବ... ...ସ୍ୱନାମାଙ୍କିତ, ବାହ୍ୱାସ୍ଫୋଟନ, ଶରଣାଗତ, ଏହି ... ...ର ସମାସ ବିବୃତ କର ।

...ର, କୃପାଚାର୍ଯ୍ୟ ଓ ଗାନ୍ଧାରୀଙ୍କ କଥା ଯାହା ଜାଣ ସଂକ୍ଷେପରେ ଲେଖ ।

...ନ୍ତ୍ର, ଅଶିଷ୍ଟ, ଶସ୍ତ୍ରସନ୍, ଯଦୃଚ୍ଛୋଦାସ୍ତି, ପ୍ର...ଯୋଦ୍ଧା, ଅନ୍ତାଭୂର୍...... ...ମାଣ, ଏହି ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ବୋଲ ।

...ପରୀକ୍ଷାର ଉପାଖ୍ୟାନ ସଂକ୍ଷେପରେ ତୁମ୍ଭର ନିଜ କଥାରେ ଲେଖ ।

୬ । ପ୍ରାଚୀନ ଅଙ୍ଗଦେଶର ବର୍ତ୍ତମାନ ଅବସ୍ଥିତ ବର୍ଣ୍ଣନା କର ।

## ଦରବାର-ଗୀତ

ଗାଅ ସର୍ବେ ହର୍ଷଭଙ୍ଗିରେ,
ବାଜ ବାଦ୍ୟ ବାଜଣରେ,
ପୁରୁଷ ଉତ୍ତମ ଶ୍ରୀଜର୍ଜ ପଞ୍ଚମ
ଆଜ ରାଜ୍ୟ ସାଜରେ । ଘୋଷା ।

ଉଭଳ ଫେନିଳ ଲହରୀ ତୋଳି
ମହୋଦଧି ଗାଉ ଜର୍ଜ ମେରୀ,
ବନେ ବନେ ପିକସମାଜ ଗାଉ, ମଧୁର କଳନ ବ୍ୟାଜରେ

## ସାହିତ୍ୟ ପ୍ରସଙ୍ଗ

ଆସ ଆସ ଭାଇ ଗାଇବା ଗୀତ,
ଭକ୍ତି-ଭାବେ ପୂରାଇ ଚିତ୍ତ,
ଆମ୍ଭର କଲ୍ୟାଣ ନିମନ୍ତେ ଜର୍ଜ, [illegible]ଆଳୟ [illegible]ରେ,
ସ୍ୱରଗରୁ ହେଉ କୁସୁମ ବୃଷ୍ଟି
ପଡ଼ୁ ବିଶ୍ୱରାଜ-ଅମୃତ-ଦୃଷ୍ଟି
ସୁଚିର ଜୀବନ ଲଭନ୍ତୁ ରାଜା ରାଣୀ [illegible]

ଶ୍ରୀ ମୃତ୍ୟୁଞ୍ଜୟ ରଥ